# ଅନ୍ତର୍ଦାହ

ବଟ୍‌କୃଷ୍ଣ ତ୍ରିପାଠୀ





**ଶ୍ରୀ ବଟକୃଷ୍ଣ ତ୍ରିପାଠୀ**

ଜନ୍ମ : ଡିସେମ୍ବର ୨୫, ୧୯୪୦ ।
ସ୍ଥାନ : ଶ୍ରୀରାମପୁର ଶାସନ, ବାଲିପାଟଣା, ପୁରୀ ।
ବୃତ୍ତି : ସରକାରୀ ଚାକିରି ।
ଭାରତୀୟ ପୁଲିସ୍ ସେବା ସଂସ୍ଥାର ବରିଷ୍ଠ କର୍ମକର୍ତ୍ତା ।
ରୁଚି : ଅଭିନୟ, ଭ୍ରମଣ, ସାହିତ୍ୟସୃଷ୍ଟି ଏବଂ ଜନସେବା ।
ଶିକ୍ଷା : ଭୁବନେଶ୍ୱର ବି.ଜେ.ବି. କଲେଜରୁ ବି.ଏ. ଇତିହାସ ଅନର୍ସ ପାସ୍ କଲା ପରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସରେ ଏମ୍.ଏ. ପାସ୍ ।
ଛାତ୍ର ଜୀବନରେ ଜଣେ ଛାତ୍ରନେତା ହିସାବରେ ଜଣାଶୁଣା ।
ଚାକିରି କାଳରେ କଟକ, ପୁରୀ, ଭୁବନେଶ୍ୱର, ରାଉରକେଲାରେ ଏସ.ପି. ଭାବେ କାର୍ଯ୍ୟରତ, ପରେ କେନ୍ଦ୍ର ସରକାରଙ୍କ ଅଧୀନରେ ଏବଂ କେନ୍ଦ୍ରରୁ ଫେରି କଟକରେ କେନ୍ଦ୍ରାଞ୍ଚଳ ଉପ-ମହାଆରକ୍ଷୀ ଭାବେ କାର୍ଯ୍ୟଭାର ଗ୍ରହଣ ।

ସୃଷ୍ଟି ସମ୍ଭାର : ପ୍ରଥମେ ଜଣେ ଶିଶୁ ସାହିତ୍ୟିକ ଭାବେ ଲେଖା ଆରମ୍ଭ କରନ୍ତି । ଜୀବନର ଅନୁଭୂତିକୁ ନେଇ ଶିଶୁ ସାହିତ୍ୟ ସୃଷ୍ଟି ସେ କରିଛନ୍ତି । ପିଲାଙ୍କ ପାଇଁ ତାଙ୍କର ବାରଖଣ୍ଡ ପୁସ୍ତକ ପ୍ରକାଶ ପାଇଛି *କଣାହାତୀ, ଯନ୍ତାରେ ବାଘୁଣା, ଶିକାର ଗପ, ଗପ ହେଲେ ବି ସତ, ପୁଲିସ୍ କୁକୁର ଚଲି, ଚାରି ସଙ୍ଗାତ, ଜଗା ବଳିଆ, ଛୋଟ ସାହେବ, ଯାତାୟାତ ଶିକ୍ଷା, ରାସ୍ତା ଦୁର୍ଘଟଣାର କାରଣ* ଇତ୍ୟାଦି ।
ଭ୍ରମଣ କାହାଣୀ : *ମୁକ୍ତିତୀର୍ଥ ଆଣ୍ଡାମାନ୍* (ଆଣ୍ଡାମାନ୍ ଦ୍ୱୀପପୁଞ୍ଜକୁ ନେଇ ତାଙ୍କର ଏକ ଭ୍ରମଣ କାହାଣୀ)
କ୍ଷୁଦ୍ରଗଳ୍ପ : *କଳା ପୃଥିବୀର କଥା, ଅନ୍ତର୍ଦାହ* ।
ବ୍ୟଙ୍ଗ ଉପନ୍ୟାସ : *ଇନ୍ଦ୍ରଙ୍କ ମର୍ତ୍ତ୍ୟଗସ୍ତ* ।
ଲେଖକ ଦଶଟିରୁ ଊର୍ଦ୍ଧ୍ୱ ଓଡ଼ିଆ, ଗୋଟିଏ ହିନ୍ଦୀ ଏବଂ ଇଂରାଜୀ ଚଳଚ୍ଚିତ୍ରରେ ଅଭିନୟ କରିବା ସଙ୍ଗେ ସଙ୍ଗେ ଚଳଚ୍ଚିତ୍ରର କାହାଣୀ ଲେଖିଛନ୍ତି ।

ସଂପାଦକ : ବହୁ ସାହିତ୍ୟ ଏବଂ ସାଂସ୍କୃତିକ ଅନୁଷ୍ଠାନ ସହିତ ପ୍ରତ୍ୟକ୍ଷ ଓ ପରୋକ୍ଷଭାବେ ସଂପୃକ୍ତ ।
ସମ୍ମାନ ଓ ପୁରସ୍କାର : ଉଲ୍ଲେଖନୀୟ ସେବାପାଇଁ ରାଷ୍ଟ୍ରପତି ପୁଲିସ୍ ପଦକ, ନ୍ୟାସନାଲ ପ୍ରେସ୍ ଇଣ୍ଡିଆ ଲିମିଟେଡ୍ (୧୯୯୧) ପୁରସ୍କାର, ସିନେ କ୍ରିଟିକ୍ ଆୱାର୍ଡ (୧୯୮୫), ଶ୍ରୀକ୍ଷେତ୍ର ଶ୍ରୀ ସମ୍ମାନ, କଟକ ପ୍ରତିଭା ସମ୍ମାନ (୧୯୯୩ ଏବଂ ୧୯୯୪) ଅନ୍ନପୂର୍ଣ୍ଣା ଥିଏଟର ଏବଂ ଅନ୍ୟାନ୍ୟ ସାହିତ୍ୟ ସମ୍ମାନ ।

# ଅନ୍ତର୍ଦାହ

ବଟକୃଷ୍ଣ ତ୍ରିପାଠୀ



ଅନ୍ତର୍ଦାହ—ଲେଖକ : ବଟକୃଷ୍ଣ ତ୍ରିପାଠୀ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ପ୍ରକାଶ : ୧୯୯୫, ପ୍ରଚ୍ଛଦ : ଅସିତ ମୁଖାର୍ଜୀ, ମୁଦ୍ରଣ : ନନ୍ଦକିଶୋର ପ୍ରେସ୍, ଦଗରପଡ଼ା, କଟକ-୨ ।



**ANTARDAHA**—Author : Batakrushna Tripathy, I.P.S. Publisher : Sahadev Pradhan, Friends' Publishers, Bincdbehari, Cuttack-753002, Orissa (India), First Edition : 1995, Cover Design : Asit Mukherjee, Printer : Nandakishore Press, Dagarapara, Cuttack-2.

Price : Rs. 30.

ISBN 81-7401-097-1

**ବୋଉ,**

ତୁ ତ ମୋତେ ସବୁ ଦେଇଛୁ— ତୋର ସ୍ନେହ, ମମତା, ଭଲପାଇବା ଇମିତି କେତେ କ'ଣ । ମୋର ସବୁକିଛି ସଫଳତା ତ ତୋର । ତୋତେ ମୁଁ ଆଉ କ'ଣ ଦେଇପାରିବ ? ଏଇ ଗଳ୍ପ ସଂକଳନ 'ଅନ୍ତର୍ଦାହ'କୁ ତୋର ହାତରେ ଦେଉଛି ।

ତୋର ଆଦରର

**ବଟ**

# କହିବାକୁ କିଛି ନଥିଲେ ବି...

ମୁଁ ଗଳ୍ପ ପଢ଼ିବାକୁ ଏବଂ ଲେଖିବାକୁ ଭଲପାଏ । ଭଲପାଏ ମୋ ଜୀବନ ପରି । ଯେମିତି ମୁଁ ଜୀବନକୁ ଅନୁଭବିଛି, ଯେମିତି ଦେଖିଛି, ସେମିତି ମୁଁ ଲେଖିଛି ମୋ ଗଳ୍ପଗୁଡ଼ିକୁ । ମୋ ଗଳ୍ପର ଘଟଣା ଓ ଚରିତ୍ର—ମୋର ଅତି ପରିଚିତ । ମୋ ଚାରିପଟେ ମୋ ଗଳ୍ପର ଚରିତ୍ରମାନେ ଘୂରୁଛନ୍ତି, ଘଟଣାଗୁଡ଼ିକ ମଧ୍ୟ ଘଟିଯାଉଛି । ଏଇ ଚଳନ୍ତି ସମୟର ସଚେତନ ମଣିଷମାନେ ଏପରି ଘଟଣା ଓ ଚରିତ୍ରକୁ ମଧ୍ୟ ଭେଟୁଛନ୍ତି । କିଏ ଅନୁଭବୁଛି କିଏ ଅନୁଭବୁ ନାହିଁ, କିଏ ଦେଖୁଛି କିଏ ଦେଖୁନାହିଁ । ମୁଁ କିନ୍ତୁ ଅନୁଭବିଛି ଓ ଦେଖିଛି । ମୋ ଭିତରେ ଘଟଣା ଓ ଚରିତ୍ରମାନେ ତଲ୍ଲୀନ ହୋଇଯାଇଛନ୍ତି । ଭାବ-ରୂପରେ ଘନୀଭୂତ ହୋଇଯାଇଛନ୍ତି । ମୋ ଭିତରୁ ପଦାକୁ ବାହାରିଆସିବାକୁ ସେସବୁ ଛଟପଟ ହୋଇଛନ୍ତି । ମୁଁ ମୋ ଭାଷାରେ ରୂପଦେଇଛି । ମୋ ଭିତରର ଯନ୍ତ୍ରଣା, ବେଦନା, ଭଲପାଇବା, ଦ୍ୱନ୍ଦ୍ୱ, ସଂଘର୍ଷ ସର୍ବୋପରି ଅନ୍ତର୍ଦାହ ମୋର ଗଳ୍ପ ଭିତରେ ବାଣ୍ଟି ହୋଇଯାଇଛି । ମଣିଷର ଯନ୍ତ୍ରଣା-ଦ୍ୱନ୍ଦ୍ୱରେ ମୋ ଅଶରୀରୀ ବ୍ୟକ୍ତିସତ୍ତ୍ୱଟି ମିଶିଯାଇଛି । ମୁଁ ଆଉ ମୋ ଗଳ୍ପଭିତରୁ ଅଲଗା ହୋଇ ରହିନାହିଁ, ଅଲଗା ମଧ୍ୟ ହୋଇନାହାନ୍ତି ମୋ ଚଳନ୍ତି ସମୟର ମଣିଷମାନେ ।

ମୋ ଗଳ୍ପର କେନ୍ଦ୍ର-ଭାବ ମାନବିକ ସମ୍ବେଦନା । ସିଏ ଯେଉଁ ସ୍ତରର ଚରିତ୍ର ହେଉନା କାହିଁକି, ସିଏ ଯେତେ ସଇତାନ ହେଉ ପଛେ, ତା' ଭିତରେ କେଉଁଠି କେମିତି ଦୁର୍ବଳ ସତ୍ତ୍ୱଟିଏ ଥାଏ, ମୁଁ ତାକୁ ଆବିଷ୍କାର କରିଛି । ସେଇଠି ମୋର ସମ୍ବେଦନା, ମୋର ସହାନୁଭୂତି । ମଣିଷକୁ ମୁଁ ଭଲପାଇଛି, ଭଲପାଇଛି ତା'ର ଯନ୍ତ୍ରଣାକୁ, ତା'ର ଅସହାୟତାକୁ ଓ ତାରି ଭିତରୁ ପ୍ରକୃତ ମଣିଷକୁ ଆବିଷ୍କାର କରିଛି । ବାହାରକୁ ଭଦ୍ର ପାଲଟିଯାଇଥିବା ମଣିଷମାନଙ୍କର ଭିତରର ଅନ୍ଧକାରକୁ ଦେଖାଇଦେଇଛି । ଘୃଣା କରିଛି ପ୍ରତାରଣାକୁ,

ପ୍ରବଞ୍ଚନାକୁ, ଛଳନାକୁ, ହୃଦୟର ପ୍ରୀତି-ଅର୍ଘ୍ୟ ପ୍ରଦାନ କରିଛି ମଣିଷକୁ ।

ମୋ ଗଳ୍ପ ମୋ ସଙ୍କଟ ଓ ଜିଜ୍ଞାସାର ପ୍ରାରୂପ । ଅଯଥା ମୁଁ ବୌଦ୍ଧିକତା ଉପରେ ଗୁରୁତ୍ୱ ଦେଇନାହିଁ । ଟେକ୍‌ନିକ୍ ଉପରେ ପ୍ରାଧାନ୍ୟ ଦେଇ-ନାହିଁ । ମୁଁ ଯେମିତି, ମୋ ଗଳ୍ପ ସେମିତି । ପାଶବିକତା ଓ ସଇତାନତ୍ୱରୁ ମୁକ୍ତି ପାଇଁ ମୋ ଗଳ୍ପ ଚେତନାର ଆନ୍ଦୋଳିତ ତରଙ୍ଗ ।

ପାଠକମାନଙ୍କୁ ମୋ ଗଳ୍ପ ଆକର୍ଷଣ କରିପାରିଲେ ମୁଁ ନିଜକୁ ଧନ୍ୟ ମନେକରିବ ।

**ଲେଖକ**

# ସୂଚିପତ୍ର


| ବିଷୟ | | ପୃଷ୍ଠା |
|---|---|---|
| ୧ । ବାବାଙ୍କ ବିଭୂତି | ... | ୧ |
| ୨ । ପୂର୍ବାପର | ... | ୧୪ |
| ୩ । ବଶୀକରଣ | ... | ୨୧ |
| ୪ । ସ୍ୱପ୍ନାଙ୍କିତ ଡାକ୍ତର ଇତିକଥା | ... | ୨୭ |
| ୫ । ପରମାର୍ଥୀ | ... | ୩୭ |
| ୬ । ଅନ୍ଧ ଦେଶକୁ ଗଲି | ... | ୪୬ |
| ୭ । ବାଘ, ବାଘୁଣୀ ଓ ମୃଗଶାବକର କାହାଣୀ | ... | ୫୩ |
| ୮ । ଅସୁର୍ଯ୍ୟ ମନଟିରେ ତଥାପି ସୂର୍ଯ୍ୟଟିଏ | ... | ୬୨ |
| ୯ । ଶାମୁକା | ... | ୬୮ |
| ୧୦ । ଅନାଗତ ଭବିଷ୍ୟତ | ... | ୮୧ |
| ୧୧ । ଅଦୃଶ୍ୟ ହାତ | ... | ୮୭ |
| ୧୨ । ଅନ୍ତର୍ଦାହ | ... | ୯୪ |
| ୧୩ । ହୁଆଇଲଷ୍ଟେସନ୍ | ... | ୧୦୪ |




# ବାବାଙ୍କ ବିଭୂତି

ପୁରୀ ସଦର ମହକୁମା ବାଲିଗ୍ରାମର ଭୂତପୂର୍ବ ମକଦ୍ଦମ ହଳଧର ଛଅଡ଼ଙ୍କର ଏକମାତ୍ର କୁଳତିଳକ ଶ୍ରୀମାନ୍ ବିଜୟକୃଷ୍ଣ ବର୍ତ୍ତମାନ ଓଡ଼ିଶା ସରକାରଙ୍କର ଜଣେ ଉଚ୍ଚପଦସ୍ଥ ଅଫିସର—ରାଜ୍ୟ ସଚିବାଳୟରେ ଉପଶାସନ ସଚିବ । ବୟସ ପଇଁଚାଳିଶ ଟପିଲାଣି । ବୟସ ଆଗେଇବା ସଙ୍ଗେ ସଙ୍ଗେ ଦେହର ସାମାନ୍ୟ ମେଦବୃଦ୍ଧି, ତାଙ୍କର ବର୍ତ୍ତମାନର ବର୍ଦ୍ଧିତ ଉଦର ସମସ୍ତଙ୍କୁ ସୂଚାଇ ଦେଉଛି । ସଂସାରରେ କ୍ଷୟବୃଦ୍ଧି ଲାଗି-ରହିଛି । ଗୋଟିଏ ପକ୍ଷେ ବୃଦ୍ଧି ହେଲେ ଅନ୍ୟପକ୍ଷେ କ୍ଷୟ ହୋଇଥାଏ । ଜଣକର ସମୃଦ୍ଧି ଅନ୍ୟଜଣଙ୍କର କ୍ଷୟ ଉପରେହିଁ ନିର୍ଭର କରିଥାଏ । ନଦୀର ସ୍ରୋତ ଗୋଟିଏ କୂଳର ଗାଁଟିକୁ ତା' ଗର୍ଭରେ ଲୀନକରି ଅନ୍ୟ କୂଳରେ ଆଉ ଗୋଟିଏ ଗାଁପାଖେ ଚଡ଼ାଟିଏ ବାନ୍ଧି ଦେଇଥାଏ । କ୍ଷୟ ଓ ବୃଦ୍ଧି ସଂସାରର ନିୟମ । ବାବୁ ବିଜୟକୃଷ୍ଣଙ୍କ ଶରୀରରେ ମେଦବୃଦ୍ଧି ଘଟିଥିଲେ ମଧ୍ୟ ମସ୍ତକର କେଶରାଶିର ଅବକ୍ଷୟ ପରିଲକ୍ଷିତ ହେଲାଣି । ଏକଦା ଶସ୍ୟଶ୍ୟାମଳା ପୂର୍ଣ୍ଣକ୍ଷେତ୍ର ଗ୍ରୀଷ୍ମର ରୌଦ୍ରତାପରେ ଶୁଷ୍କଭୂମିରେ ପରିଣତ ହେଲାପରି ବିଜୟକୃଷ୍ଣଙ୍କ ଉଦ୍ଦାମ ଯୌବନର ଘନକୃଷ୍ଣ କେଶରାଶି, ବୟସର ରୁଦ୍ରତାପରେ ଟାଙ୍ଗରା ମୁଣ୍ଡରେ ପରିଣତ ହେଲେଣି । କେବଳ ମସ୍ତକର ପଶ୍ଚାତ୍‌ଭାଗରେ ବର୍ତ୍ତମାନର ସ୍ୱଳ୍ପ କେତେକ କେଶ, ପୂର୍ବ ଘନକୃଷ୍ଣ କେଶରାଶିର ମୂକସାକ୍ଷୀରୂପେ ବିରାଜିତ । ଅବଶ୍ୟ ବିଜୟକୃଷ୍ଣ କେଶର ସ୍ୱଳ୍ପତା ପାଇଁ ଚିନ୍ତିତ ନୁହନ୍ତି । ତାଙ୍କର ପିତା, ପିତାମହ, ପ୍ରପିତାମହ ସମସ୍ତେ କୁଆଡ଼େ ଚାଳିଶ ଟପିଲା ପରେ ପରେ ଟାଙ୍ଗରା ହୋଇଯାଇଥିଲେ । ବିଜୟକୃଷ୍ଣ ବାଲ୍ୟକାଳରେ ତାଙ୍କ ପ୍ରପିତାମହୀ କହିବାର ଶୁଣିଛନ୍ତି ଯେ, ତାଙ୍କର ସ୍ୱାମୀ ମକଦ୍ଦମ ଜୟକୃଷ୍ଣ ଛଆଡ଼ ଯେତେବେଳେ ଚିକ୍‌କଣ ଟାଙ୍ଗରାମୁଣ୍ଡରେ ଘଣାପେଡ଼ା ରାଶିତେଲ ଲଗାଇ, ଗ୍ରାଇ-ଲେଉଟିଆ ଖରାରେ ଗାଁଦାଣ୍ଡରେ ବୁଲୁଥିଲେ, ସେତେବେଳେ ନଗୁହିଁବା ଆଖି ତାଙ୍କ ମୁଣ୍ଡରେ କ୍ଷଣକ ପାଇଁ ହେଲେ ମଧ୍ୟ ଲାଖିଯାଉଥିଲା । ଟାଙ୍ଗରା ହେବା କୁଆଡ଼େ ଧନୀମାନୀ ହେବାର ଶୁଭସୂଚନା ଓ ହେରଡ଼ଟାର । ବିଜୟକୃଷ୍ଣ ଏକାନ୍ତରେ ବେଳେବେଳେ ବସି ଟାଙ୍ଗରାମୁଣ୍ଡରେ ହାତ ବୁଲାଇଲାବେଳେ କେଶର ଅନୁପସ୍ଥିତି ଅନୁଭବ କଲେହେଁ ଦୁଃଖିତ ଥିଲାପରି ଜଣାପଡ଼ନ୍ତି ନାହିଁ । ମଣିଷ ମାତ୍ରେ କ୍ଷତି ପ୍ରତି ସାବଧାନ ଥାଏ ଓ ଲାଭ ଆଶାରେ ଦଉଡ଼ୁଥାଏ । ବିଜୟକୃଷ୍ଣଙ୍କ ମନରେ କ୍ଷତି

ଆଶଙ୍କା ଜାଗ୍ରତ ହେଲ ମାତ୍ରେ ତାଙ୍କ ଅର୍ଦ୍ଧାଙ୍ଗିନୀ ପ୍ରଭାମୟୀଙ୍କ ପାଖରେ କିଛି ଲାଭର ସୂଚନା ପାଆନ୍ତି । ପ୍ରଭାମୟୀଙ୍କ ବୟସ ତ୍ରିଶ ପାଖେଇ ଥିଲେ ମଧ୍ୟ ତାଙ୍କ ମସ୍ତକର ଗୋଟିଏ ହେଲେ କେଶ ଉପୁଡ଼ିବାର କିମ୍ବା ଧଳା ହେବାର ସୂଚନା ମିଳିନି । ଦୀର୍ଘ ଏକୋଇଶ ବର୍ଷଧରି ତାଙ୍କର କାକକୃଷ୍ଣ ସର୍ପିଲବେଣୀ ପୂର୍ବବତ୍ ଖେଳୁଛି । କ୍ଷୟଶୀଳ ତ୍ରିଶର ପାଦଦେଶରେ ମଧ୍ୟ ପ୍ରଭାମୟୀ ଷୋଡ଼ଶୀ କେଶଗୁଚ୍ଛର ଅଧିକାରିଣୀ । ବୟସର ଛାପ କେଶକୁ ସ୍ପର୍ଶ କରିନି । ବିଜୟକୃଷ୍ଣ ଦର୍ପଣରେ ନିଜ ଟାଙ୍ଗରାମସ୍ତକକୁ ପ୍ରତ୍ୟକ୍ଷରେ ଦେଖିବାବେଳେ ପ୍ରଭାମୟୀର କେଶସମ୍ଭାର ମାନସ-ଚକ୍ଷୁରେ ନାଚିଉଠେ ।

ଅବଶ୍ୟ ପ୍ରଭାମୟୀଙ୍କ କେଶଗୁଚ୍ଛର ଅଦ୍ୟାବଧି ପ୍ରାକୃତିକ ଔଜ୍ଜ୍ୱଲ୍ୟର ଗୂଢ଼ତତ୍ତ୍ୱ ବିଷୟରେ ବିଜୟକୃଷ୍ଣ ବହୁ ପୂର୍ବରୁ ଅବହିତ । ପ୍ରଥମେ ପ୍ରଥମେ ସେ ପ୍ରଭାଙ୍କ ପ୍ରରୋଚନାରେ କେଶ ପରିଚର୍ଯ୍ୟାର ସେଇ ଗୂଢ଼ତତ୍ତ୍ୱକୁ ନିଜ ମସ୍ତକରେ ପରୀକ୍ଷା କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ କାର୍ଯ୍ୟବ୍ୟସ୍ତତା ଓ ଅନିୟମାନୁବର୍ତ୍ତିତା ଫଳ-ଲାଭରେ ପ୍ରତିବନ୍ଧକ ହେଲା । ଏଥିପାଇଁ ସେ ପ୍ରଭାମୟୀଙ୍କ ମଧୁର ଭର୍ତ୍ସନା ଓ ଲାଞ୍ଛନାର ଶରବ୍ୟ ହୋଇଛନ୍ତି । ପ୍ରତ୍ୟେକ ଦିନ ସକାଳେ ଓ ରାତିରେ ଶୋଇବା ପୂର୍ବରୁ କେଶପ୍ରସାଧନ ପ୍ରଭାଙ୍କର ନିୟମିତ ଅଭ୍ୟାସ । ରାତିରେ କେଶପ୍ରସାଧନ ଅନୁଚିତ ବୋଲି ଶାଶୁଙ୍କ ଟିପ୍ପଣୀ ପ୍ରଭାଙ୍କ ପାଖରେ ପ୍ରଭାବହୀନ ହୋଇପଡ଼ିଥିଲା । ସେ ଶାଶୁଙ୍କୁ ବିଭିନ୍ନ ସମ୍ବାଦପତ୍ରର ମହିଳା ବିଭାଗ, ମ୍ୟାଗାଜିନ, ମହିଳା ମାସିକ ପତ୍ରିକାରେ ପ୍ରକାଶିତ ହେଉଥିବା ଭିନ୍ନ ଭିନ୍ନ ମତବାଦକୁ ନଜର ଦେଇ, ଶାଶୁଙ୍କ ଟିପ୍ପଣୀକୁ ଖଣ୍ଡନ କରିବା ସଙ୍ଗେ ସଙ୍ଗେ ପ୍ରତିପାଦନ କରି ଦେଖାଇ ଦେଉଥିଲେ ଯେ ପୃଥିବୀର ପ୍ରତ୍ୟେକ କେଶବତୀ କନ୍ୟାଙ୍କର ରାତିରେ ଶୋଇବା ପୂର୍ବରୁ ଅନ୍ତତଃପକ୍ଷେ ଶହେଥର କେଶମୂଳଗୁଡ଼ିକୁ ଶିଙ୍ଘ ପାନିଆରେ କୁଣ୍ଡାଇବା ବିଧି । ପ୍ରଭାଙ୍କ ଯୁକ୍ତି ଆଗରେ ଶାଶୁଙ୍କ ଆପତ୍ତି ଦୁର୍ବଳ ହୋଇପଡ଼େ ।

ବିଜୟକୃଷ୍ଣଙ୍କ ଅନ୍ତରଙ୍ଗ ବନ୍ଧୁ ଓ କେତେକ ସ୍ଥଳରେ ବନ୍ଧୁପତ୍ନୀମାନେ ତାଙ୍କ ଲଣ୍ଡିତପ୍ରାୟ କେଶହୀନତା ଉପରେ ମନ୍ତବ୍ୟ ଦେବାକୁ କଥା ଆରମ୍ଭ କରିବା ମାତ୍ରେ ବିଜୟକୃଷ୍ଣ ତତ୍କ୍ଷଣାତ୍ ସେମାନଙ୍କର ନଜର ନିଜ ଅର୍ଦ୍ଧାଙ୍ଗିନୀ ପ୍ରଭାମୟୀଙ୍କ କେଶଆଡ଼େ ଆକର୍ଷଣ କରି ଦେଖିବାକୁ ଅନୁରୋଧ କରନ୍ତି । ସେ କହନ୍ତି ପ୍ରଭାମୟୀଙ୍କ ଘନ କେଶଗୁଚ୍ଛ କୁଆଡ଼େ ତାଙ୍କର ଟାଙ୍ଗରାମୁଣ୍ଡକୁ କମ୍ପେନ୍‌ସେଟ୍ କରୁଛି । ଯୁକ୍ତି ଉପସ୍ଥାପିତ କରି ସେ ଯେତେବେଳେ ମୁରୁକି ବନ୍ଧୁପତ୍ନୀମାନଙ୍କ ଆଡ଼କୁ ମୁହଁ ବୁଲାନ୍ତି, ସେମାନଙ୍କ ମଧ୍ୟରୁ ବହୁ ଅତ୍ୟାଧୁନିକା ରମଣୀ ସେମାନଙ୍କ ମୂଷିକ ଲାଙ୍ଗୁଡ଼ବତ୍ କେଶଗୁଚ୍ଛ ବେକତଳେ ଦୋଳି ଖେଳୁଥିବା ତ୍ରୁଟି ଅବା ସେଥିରୁ ରକ୍ଷା ପାଇବାକୁ ଯାଇ ପରିଣତ ବୟସରେ ବବ୍‌କଟ୍ କରିଥିବା ବନ୍ଧୁପତ୍ନୀମାନେ

ବିଜୟକୃଷ୍ଣଙ୍କ ଝାଙ୍ଗର ଖପୁରି ଉପରେ ଆଉ ଅଧିକ ମନୋନିବେଶ ନକରି ପ୍ରଭାଙ୍କ ପାଖକୁ ଲଗାଲଗି ହୋଇ ଆସି ତାଙ୍କଠାରୁ କେଶର ସ୍ୱାସ୍ଥ୍ୟ ଓ ରକ୍ଷଣାବେକ୍ଷଣ ବିଷୟରେ କିଛି ଗୂଢ଼ତତ୍ତ୍ୱଜ୍ଞାନ ହାସଲ କରିବା ପାଇଁ ତତ୍ପରତା ଦେଖାନ୍ତି । ସେ ଅବସରରେ ପ୍ରଭାଙ୍କ ମୁଖମଣ୍ଡଳରେ ଉଦ୍‌ଗତ ପୂନେଇଁ ଚନ୍ଦ୍ରର ପ୍ରକାଶ ଭାବ ଯେ ଥରେ ଲକ୍ଷ୍ୟ କରିଛି ସେ ବିଜୟକୃଷ୍ଣଙ୍କ ସଦା ଚିନ୍ତାଗ୍ରସ୍ତ ଧାନଉପୁଆଁ ହାଣ୍ଡି ବିନ୍ଧ ବଦନ ଦେଖିଲେ, କେତେକ ଗ୍ରାମ୍ୟ ଓ ଅଶ୍ଳୀଳ ଉପମା ଦୋହରାନ୍ତି ଓ ଅନ୍ୟ କେତେକ ସାଙ୍ଗ ଭାବନ୍ତି, ଆହା ଏପରି ସୁନ୍ଦର ହସହସ ସରସ ସଦାଚଞ୍ଚଳ ଚଞ୍ଚଳାରୂପିଣୀ ପ୍ରଭାଙ୍କୁ ସ୍ତ୍ରୀରୂପେ ପାଇ ବିଜୟକୃଷ୍ଣଙ୍କ ମୁଖମଣ୍ଡଳରେ ବର୍ଷସାରା ବାରମାସୀ ପୂନେଇଁ ଚନ୍ଦ୍ର ଉଇଁବା କଥା । ମାତ୍ର ବିଜୟକୃଷ୍ଣଙ୍କ ଶ୍ରୀହୀନ ଶୁଷ୍କ ମୁଖମଣ୍ଡଳରେ ଟାଣିଓଟାରି ଆଣୁଥିବା ହସ ସେମାନେ ଅନୁମୋଦନ କରିବାକୁ ଦ୍ୱିଧାଗ୍ରସ୍ତ ହୁଅନ୍ତି । କେତେକ ହିତାକାଂକ୍ଷୀ ବନ୍ଧୁ ବିଜୟକୃଷ୍ଣଙ୍କୁ ତାଙ୍କର ରକ୍ତଚାପ, ରକ୍ତ, ମଳମୂତ୍ର ଡାକ୍ତରୀ ପରୀକ୍ଷା କରାଇନେଇ ଚିକିତ୍ସାରେ ରହିବାକୁ ମଧ୍ୟ ଉପଦେଶ ଦିଅନ୍ତି । ପଇଁଚାଳିଶ ଛୁଇଁବା ପରେ ଲୋକଙ୍କୁ ରକ୍ତଚାପ, ମଧୁମେହ, ହୃଦ୍‌ରୋଗ ଆଦି ଦୁରାରୋଗ୍ୟ ବ୍ୟାଧି କବଳିତ କରିବା ସଙ୍ଗେ ସଙ୍ଗେ ମୁହଁରୁ ହସ ଲିଭାଇ ଦିଏ ।

ବନ୍ଧୁମାନଙ୍କ ଉପଦେଶ ବିଜୟକୃଷ୍ଣ ମନୋଯୋଗ ସହକାରେ ଶୁଣନ୍ତି ଓ ପ୍ରସ୍ତାବରେ ସମ୍ମତି ଜଣାଇ ମୁଣ୍ଡ ହଲାନ୍ତି । ଉପଦେଶାନୁସାରେ ଡାକ୍ତରୀ ପରୀକ୍ଷା କରାଇ ରିପୋର୍ଟ ନେଇ ଆସନ୍ତି । କିନ୍ତୁ ସେ ଭଲଭାବେ ହୃଦୟଙ୍ଗମ କରନ୍ତି ଏ ପର୍ଯ୍ୟନ୍ତ ତାଙ୍କୁ ଉପରୋକ୍ତ କୌଣସି ରୋଗ ଆକ୍ରମଣ କରିନାହିଁ । ଯେଉଁ ଅଜଣା ରୋଗ ତାଙ୍କୁ ଗ୍ରାସିଛି ତା'ର ଔଷଧ ଖୋଜି ସେ ପାଇନାହାନ୍ତି । ବନପୋଡ଼ି ସମସ୍ତେ ଜାଣନ୍ତି, ମନ ପୋଡ଼ୁଥିଲେ କିଏ ଜାଣିବ—

ହେଲେ ଏଇ କେତେଦିନ ହେଲା ବିଜୟକୃଷ୍ଣଙ୍କ ମନରୋଗ ତାଙ୍କୁ ବେଶି ଆଚ୍ଛନ୍ନ କରି ରଖିବାର ସେ ଅନୁଭବ କଲେଣି । ଯନ୍ତ୍ରାରେ ମୂଢ଼ ଶୃଙ୍ଖଳ ଆବଦ୍ଧ ହେଲା ପରେ, ମହାବଳର ନିଶ୍ଚିତ ଖାଦ୍ୟ ହେଲାପରି ସେ ସଂସାର ଜଞ୍ଜାଳରୂପକ ଯନ୍ତ୍ରାରେ ପଡ଼ି ମନରୋଗରୂପକ ମହାବଳର ଖାଦ୍ୟ ହେବାକୁ ବସିଲେଣି । ମନରୋଗ ଦୂରକରିବା ପାଇଁ ସେ ଯେତେପ୍ରକାର ଉପାୟ କଲେଣି କୌଣସି ଉପାୟ କାମ୍ କରୁନାହିଁ । ହୋମିଓପାଥି ଡାକ୍ତର, ରୋଗର ମୂଳ ତାଡ଼ିଓଟାରି ବାହାର କଲାପରି ସେ ନିରୋଳାରେ ବସି ମନରୋଗର ଉତ୍ପତ୍ତିସ୍ଥଳ ଓ କାରଣ ବିଷୟରେ ଚିନ୍ତା କରନ୍ତି । ମନେ ମନେ ପ୍ରଭାଙ୍କ କଥାବାର୍ତ୍ତା ଓ ବ୍ୟବହାର ବିଷୟରେ ପର୍ଯ୍ୟାଲୋଚନା କରି ଭାବନ୍ତି ଯେ, ପ୍ରଭାଙ୍କ ତାଙ୍କ ପ୍ରତି ବିମୁଖତା ଏବଂ

ରୁକ୍ଷ ବ୍ୟବହାର ପରିବାରର ଆର୍ଥିକ ଅବସ୍ଥା ଜାଣି ନଜାଣିଲା ପରି ବ୍ୟବହାରହିଁ ଏହାର ମୂଳ କାରଣ ।

ମାସର ଶେଷଭାଗକୁ ଅର୍ଥାଭାବ ବିଷୟରେ ପ୍ରଭା ଜାଣିସୁଦ୍ଧା ଫଳ କିଣା ବନ୍ଦ ସପ୍ତାହରେ ଗୁରୁଦିନ । କେବେ ଫଳାହାର ତ, କେବେ ସରୁଅରୁଆ, ଡାଲଣା, ଆଳୁପୋଟଳ ରସା ପାଇଁ ବରାଦ । ବଡ଼ଝିଅର ଆଳୁପୋଟଳ ଦରକାର—ସାନଝିଅର କଖାରୁ, କଞ୍ଚାକଦଳୀ ଚଳିବ ନାହିଁ । ପରିବାରର ପ୍ରତ୍ୟେକଙ୍କ ପାଇଁ ଅଲଗା ରୋଷେଇ । ପ୍ରଭାଙ୍କ ଦୁର୍ଦ୍ଦଶା ଦିନମାନଙ୍କରେ ରୋଷେଇ ଘରେ ରସୁଣ ପିଆଜ ପଶିବନି । ଡାଲ୍‌ଡାଘିଅ ନାଁ ଶୁଣିଲେ ପେଟ ଫାମ୍ପିବ । ରୋଷେଇଆ ବିଚରା ସକାଳ ଛଅଟାରୁ ରାତି ବାରଟା ପର୍ଯ୍ୟନ୍ତ ରୋଷେଇଘରେ; କିନ୍ତୁ ଦେଢ଼ିଲା-ବେଳକୁ ରନ୍ଧାବଢ଼ାରେ ପରିବାରର କେହି ସନ୍ତୁଷ୍ଟ ନୁହନ୍ତି । ଯେତେ ବୁଝାଇଲେ କିଛି ଫଳ ହୁଏନାହିଁ ।

ବିଜୟକୃଷ୍ଣ ମନେପକାନ୍ତି ତାଙ୍କ କଲେଜଦିନର କଥା । ମଫସଲ ଗାଁରୁ ମ୍ୟାଟ୍ରିକ୍ ପାସ୍ କରି କଟକ କଲେଜରେ ପାଦ ଦେଲାବେଳେ ତାଙ୍କ ମୁଣ୍ଡ ପଛପଟେ ଗୋଟାଏ ଘୁଷୁରି ଲାଙ୍ଗୁଡ଼ ପରି ଚୁଟି ଥିଲା । ତାଙ୍କ ଉପରେ ମା'ଙ୍କର ବହୁ ସନ୍ତାନ ମରିଥିଲେ ବୋଲି ବୋଉ ତାଙ୍କ ନାକ ଫୋଡ଼ିଦେଇ ଗୋଟାଏ ସୁନାଫାଶିଆ ଦେଇଥିଲେ । କଲେଜଦିନ ପାଇଁ ଗୋଟିଏ ପଟ ନାକରେ ସେ ଫାଶିଆ ପିନ୍ଧିଥିଲେ । କଟକ ସାହିଟୋକା ତାଙ୍କ ଚୁଟିରେ ଗେଣ୍ଡୁ ଫୁଲ ବାନ୍ଧିଲେ । ନୂଆ ନୂଆ କଲେଜରେ ପାଦ ଦେଇଥିବା ସହପାଠୀ ଝିଅମାନେ ମୁହଁରେ ବହିଦେଇ ଚାପାହସ ହସନ୍ତି । କିଏ କହେ ମଫ ତ କିଏ କହେ ହନୁ, କିନ୍ତୁ ଦିନ କେଉଁଠାରେ ସବୁ ପରିସ୍ଥିତି ସହିତ ନିଜକୁ ବଦଳାଇ ସେ ଆଡ଼୍‌ଜଷ୍ଟ କରିନେଲେ । ଯେତେହେଲେ ସେ ମକଦ୍ଦମ ବଂଶର ଦାୟାଦ । କଟକ ସାହି ବଗପିଆଳିଆ ଟୋକାଙ୍କ ପାଖରେ ସେ ହାର ମାନିଯିବେ ? ବର୍ଷ ପୂରିଲା ବେଳକୁ ବିଜୟକୃଷ୍ଣ କଲେଜ ଛାତ୍ର ଓ ଶିକ୍ଷକ ମହଲରେ ବେଶ୍ ଜଣାଶୁଣା ହୋଇଗଲେ । ସେ ହେଲେ କଲେଜରେ ଅପ୍ରତିଦ୍ୱନ୍ଦ୍ୱୀ ନେତା । ଯେଉଁ ଝିଅମାନେ ମୁହଁରେ ବହିଚାପି ହସୁଥିଲେ ସେମାନେ ବିଜୟକୃଷ୍ଣଙ୍କ ସାମନାକୁ ଆସିବାକୁ ନିଜ ଭିତରେ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ କରିଦେଲେ । ତାଙ୍କ ସ୍ନାତକୋତ୍ତର ଶେଷବର୍ଷରେ ପ୍ରଭା ନୂଆହୋଇ କଲେଜକୁ ଆସିଲେ । କଲେଜ ଇଉନିୟନ ସଭାପତି ନିର୍ବାଚନ ପ୍ରଚାର ସମୟରେ ତାଙ୍କର ଦେଖାହୁଏ ପ୍ରଭାଙ୍କ ସଙ୍ଗେ । ବାସ୍ ସେତିକି । ସେ ତଳକ୍ଲାସ ଝିଅମାନଙ୍କ ଭୋଟ ପାଇଁ ବିଜୟକୃଷ୍ଣଙ୍କୁ ସମର୍ଥନ କଲେ ।

ସମୟର ସ୍ରୋତ ଗଡ଼ିଗଲା । ବିଜୟ ଏମ୍. ଏ. ପାସ୍ କରି ଡେପୁଟି କଲେକ୍ଟର ହେଲେ । ଚାକିରି ଆରମ୍ଭ ବେଳେ ପ୍ରଭାଙ୍କ ବାପା ତାଙ୍କ ଉପରିସ୍ଥ

ଅଫିସର । ପ୍ରଭାଙ୍କ ବାପାଙ୍କ ତରଫରୁ ବିବାହ ପ୍ରସ୍ତାବ ଆସିଲା । କନ୍ୟା ଦେଖାପରେ ବିଜୟଙ୍କ ମା' ଜାତକ ନପଢ଼ିଲେ ବିବାହ ପାଇଁ ସମ୍ମତି ଦେଇପାରିବେନି ବୋଲି ଜିଦ୍ ଧରିବାରୁ ପ୍ରଭାଙ୍କ ପିତାମହଙ୍କ ଜ୍ୟେଷ୍ଠଭ୍ରାତା ଯେ କି ସେ ସମୟରେ ବିଖ୍ୟାତ ସଂସ୍କୃତ ପଣ୍ଡିତ, ସେ ଗଣନା କରି ରାକ୍ଷସଗଣ କନ୍ୟା ଓ ରାକ୍ଷସଗଣ ବରଙ୍କ ବିବାହ ଶାସ୍ତ୍ରସମ୍ମତ ବୋଲି ମତଦେଲେ । ଦେବଗଣ କିମ୍ବା ନରଗଣଙ୍କ ସହିତ ରାକ୍ଷସଗଣ ହୋଇଥିଲେ ବିଜୟକୃଷ୍ଣ ପ୍ରଭାଙ୍କୁ ଛାଡ଼ି ଆଉ କାହା ସଙ୍ଗେ ଘର କରିଥାନ୍ତେ । ପଣ୍ଡିତ ମହାଶୟଙ୍କ ମତ ଉପରେ ବିବାହ ହୋଇଗଲା ।

ବିବାହ ପରେ ବିଜୟକୃଷ୍ଣ ପ୍ରଭାଙ୍କୁ ସଙ୍ଗରେ ନେଇ କଟକ, କେଉଁଝର, କୋରାପୁଟ ଆଦି ଓଡ଼ିଶାର ପ୍ରାୟ ସବୁ ଜିଲ୍ଲାରେ ଚାକିରି ଅବସରରେ ବୁଲିଛନ୍ତି । ପ୍ରାୟ ପ୍ରତ୍ୟେକ ଜାଗାରେ ଉଭୟଙ୍କ ମଧ୍ୟରେ ମତାନ୍ତରର କୌଣସି ନା କୌଣସି ଘଟଣା ସ୍ମରଣୀୟ ହୋଇ ରହିଛି । କେଉଁଝରଠାରେ ଥିବା ସମୟରେ ପ୍ରଭାଙ୍କ ପୁଅପିଲା ଚାକର ପାଇଁ ଜିଦ୍ ଓ ବାବୁଙ୍କର ଝିଅପିଲା ଚାକର ପାଇଁ ଜିଦ୍‌ରୁ ମନୋମାଳିନ୍ୟ ଘଟି ପ୍ରଭା ୬ ମାସ ବାପାଙ୍କ ଘରେ ରହିଲେ । ତଥାପି ଦୁହେଁଯାକ ଜିଦ୍ ନଛାଡ଼ିବାରୁ ବିଜୟକୃଷ୍ଣ ଶେଷକୁ ଗୋଟିଏ ପୁଅ ଓ ଗୋଟିଏ ଝିଅ —ଏମିତି ଦୁଇଜଣ ଚାକର ରଖିବାକୁ ବାଧ୍ୟ ହେଲେ । ସେହିପରି ବଲାଙ୍ଗିରଠାରେ ଥିବା ସମୟରେ ରାଜେଶଖାନ୍ନା ହିରୋ ଥିବା ଛବିର ସିନେମା ଦେଖିଯିବାକୁ ପ୍ରଭା କହିଲା-ବେଳେ ରାଜକୁମାର ଅଭିନୟ କରୁଥିବା ସିନେମା ଦେଖିବାକୁ ବିଜୟକୃଷ୍ଣ ପସନ୍ଦ କରିବା ଘଟଣାକୁ ନେଇ ଯୁକ୍ତିତର୍କ ଏପରି ଆକାର ଧାରଣ କଲା ଯେ ଦୁହେଁଯାକ ପୁଣି ୬ ମାସ ପରସ୍ପରଠାରୁ ଅଲଗା ହୋଇ ରହିଲେ । ଦୁଇ ଦୁଇଟା ପିଲାର ବାପା-ମା ହୋଇସାରିବା ପରେ ବି ଦୁହେଁ କେବେହେଲେ ଗୋଟାଏ କଷ୍ଟିରେ ଏକମତ ହୋଇପାରିନାହାନ୍ତି । ସାମାନ୍ୟ ଘଟଣା ଉପରେ ଦୁହିଁଙ୍କ ମନରେ ବିରାଟ ବ୍ୟବଧାନର ଆବିର୍ଭାବ ହୁଏ । ବିଜୟ ଅଫିସକୁ ଯିବା ସମୟରେ ପ୍ରଭାଙ୍କୁ କୌଣସି ବିବାଦ୍ କରିବାକୁ ମନାକରିବା ସତ୍ତ୍ୱେ ପ୍ରଭା ଠିକ୍ ବିଜୟଙ୍କ ଅଫିସ ଯିବାବେଳେ କୌଣସି ନା କୌଣସି ବିବାଦ୍ ଦେଇ ଜଟିଳ ପରିସ୍ଥିତି ସୃଷ୍ଟି କରିବାରେ ବଦ୍ଧପରିକର । ଅରେ ତାଙ୍କର କଲେଜ ପଢ଼ୁଆ ଝିଅ ମତଦେଲା ଯେ, "ଡାଡି ଓ ମମି ଦୁଇଟି ସମାନ୍ତରାଳ ସରଳରେଖା ।"

ଝିଅର ମନ୍ତବ୍ୟ ଉପରେ ବିଚାର କରି ବିଜୟକୃଷ୍ଣ ଚିନ୍ତା କଲେ ପ୍ରକୃତରେ ଝିଅଟା ତ ସତକଥା କହିଲା ।

ବିଜୟକୃଷ୍ଣ ଭାବି ଦେଖିଲେ ବିବାହ ପରଠାରୁ ସ୍ୱାମୀ-ସ୍ତ୍ରୀ ଦୁହେଁ କେବେ ହେଲେ ଗୋଟିଏ କଥାରେ ଏକମତ ହୋଇପାରିନାହାନ୍ତି । ସେ ଭାବିଛନ୍ତି ଦୁହିଁଙ୍କ

ଜାତକରେ ଗ୍ରହସଗଣ ଯୋଗ ବିଷୟ । କିଏ କାହାକୁ ଗ୍ରାଉ୍ଛି ।  ହେଁ । ପ୍ରଭାବାଳୟକୁ ବଦଳି ହୋଇ ଆସିବାପରେ ବିଜୟ ଭିନ୍ନ ଭିନ୍ନ ଲେଖକଙ୍କର "ମୁଁ ଭଲ—ତୁମେ ଭଲ" (I am O. K., You are O.K.) "ସ୍ତ୍ରୀଙ୍କ ମନ କପର ନେଇ ପାରିବ" (How to win over wife) ଇତ୍ୟାଦି ବହି କିଣି ପଢ଼ିଲେ । ଯେତେ ବିଦ୍ୟା ଶିଖି ପ୍ରଭାଙ୍କୁ ପ୍ରଭାବିତ କରିବାର ଯତ୍ନକଲେ କ'ଣ ହେବ—ଫଳ ଯଥା ପୂର୍ବଂ ।

ଏବେ ପ୍ରଭାଙ୍କର ନୂଆ ଚିନ୍ତାଧାରା । ବିଜୟ ତାକୁ କହୁଛନ୍ତି ନୂଆ ରୋଗ । ଏଇ ରୋଗ ଯୋଗୁଁ ଘରେ ସବୁ ଥାଇ ମଧ୍ୟ ଶାନ୍ତି ନାହିଁ । ପିଲାଙ୍କ ବାଟରେ ପିଲେ, ବାପାଙ୍କ ବାଟରେ ବାପା, ମା'ଙ୍କ ବାଟରେ ମାଆ । ଘରେ ଯେମିତି ସବୁ ଗୋଟିଏ ଗୋଟିଏ ଅଲଗା ମେସିନ୍‌ର ପାର୍ଟ । ଗୃହର ସ୍ୱାମୀମାନେ ଯାହା ଖାଲି ଏହି ଅମେଳ ମେସିନ୍‌ର ପାର୍ଟଗୁଡ଼ିକୁ ଗୃହ ଅବସ୍ଥାରେ ରଖିବା ପାଇଁ ସକାଳ ଛଅଟାରୁ ରାତି ବାରଟା ପର୍ଯ୍ୟନ୍ତ ଅବିରାମ ଗତିରେ ତେଲପାଣି ଯୋଗାଇବାରେ ଲାଗିଛନ୍ତି । ବିଜୟକୃଷ୍ଣ ଏ ବିଷୟରେ ଚିନ୍ତାକରି କୌଣସି କୂଳକିନାରା ପାଉନାହାନ୍ତି । ସେ କେତେଥର ପ୍ରଭାଙ୍କୁ ବୁଝାଇବାକୁ ଚେଷ୍ଟା କରିଛନ୍ତି ଯେ ଏତେ ଓଷା, ବ୍ରତ, ପୂଜାର ଆବଶ୍ୟକତା ନାହିଁ । ସପ୍ତାହକେ ଦିନେ ପୂଜା କଲେ ବି ଠାକୁର ଶୁଣିବେ । ସପ୍ତାହକରେ ରବିବାରଠାରୁ ଶନିବାର ପର୍ଯ୍ୟନ୍ତ ଉପବାସ, ପୂଜା କଲେ ଘର ଚଳାଇବା କାର୍ଯ୍ୟକ୍ରମ ବ୍ୟାହତ ହୋଇ ବିଶୃଙ୍ଖଳା ଉପୁଜୁଛି । କିନ୍ତୁ ପ୍ରଭାଙ୍କ ଯୁକ୍ତି ଯେ ଈଶ୍ୱର ଏକ ହୋଇପାରନ୍ତି କିନ୍ତୁ ବିଭିନ୍ନ ମାର୍ଗରେ ଭିନ୍ନ ଭିନ୍ନ ଦେବତାଙ୍କ ଜରିଆରେ ନଯାଇ ସିଧାସଳଖ ଈଶ୍ୱରଙ୍କ ପାଖକୁ ଯିବା ସମ୍ଭବପର ନୁହେଁ । ଯେପରି ଉଚ୍ଚ କର୍ମକର୍ତ୍ତାଙ୍କ ପାଖକୁ ପହଞ୍ଚିବାକୁ ତଳସ୍ତରରୁ ଭିନ୍ନ ଭିନ୍ନ ସ୍ତର ଅତିକ୍ରମ କଲେ କର୍ତ୍ତୃପକ୍ଷଙ୍କ ନିକଟରେ ପହଞ୍ଚିବା ସହଜ ହେଉଛି, ଭଗବାନଙ୍କ ପାଖକୁ ମଧ୍ୟ ସେହିପରି ରବିବାରରେ ରବିନାରାୟଣ, ସୋମବାରରେ ଦେବଦେବ ମହାଦେବ, ମଙ୍ଗଳବାର ଦିନ ବୀରହନୁମାନ, ଗୁରୁବାର ଦିନ ମହାଲକ୍ଷ୍ମୀ, ଶୁକ୍ରବାରକୁ ସନ୍ତୋଷୀ ମା' ଉପାସ କରି ସୋପାନ ପରେ ସୋପାନ ଅତିକ୍ରମ କରିବା ଆବଶ୍ୟକ । ତା'ଛଡ଼ା ଉପାସ, ବ୍ରତ, ପୂଜାଦି ସେ କଲବେଳକୁ ଅନ୍ୟମାନଙ୍କର କ'ଣ କ୍ଷତି ହେଉଛି ? କିନ୍ତୁ ସେ ଭାବିପାରନ୍ତି ନାହିଁ ଯେ ତାଙ୍କ ଗୃହପତି ଘର ଗୋଟାକଯାକର କାର୍ଯ୍ୟକ୍ରମ ଅକ୍ଷ ଗୃହପତି ଚକପରି ଘୂରିବୁଲୁଛି । ବିଜୟ ସମସ୍ତ ଚେଷ୍ଟା ଓ ଯୁକ୍ତି ବିଫଳ ହେଲାପରେ ମାନସିକ ଶାନ୍ତି ହରାଇ ବିଷଣ୍ଣ ହୋଇ ରହନ୍ତି । ଏବେ ପ୍ରାୟ କଥା ବନ୍ଦ । ଦୁହେଁ କେବଳ କାନ୍ଥକୁ ବାଡ଼କୁ ଚାହିଁ କଥାବାର୍ତ୍ତା ହୁଅନ୍ତି ।

ଦିନକର ଘଟଣା । ବିଜୟକୃଷ୍ଣ ଅଫିସରୁ ଘରକୁ ଫେରିବା ବାଟରେ ତାଙ୍କର ପିଲାଦିନର ଘନିଷ୍ଠବନ୍ଧୁ କାର୍ତ୍ତିକଙ୍କ ସହ ଅପ୍ରତ୍ୟାଶିତ ଭାବରେ ଦେଖା

ହୋଇଗଲା । କୀର୍ତ୍ତିନ ଓରଫ କୀର୍ତ୍ତିନକୃଷ୍ଣ ମ୍ୟାଟ୍ରିକ୍ ପରୀକ୍ଷାରେ ଦୁଇଥର ଅକୃତକାର୍ଯ୍ୟ ହେଲାପରେ ଘରଛାଡ଼ି ଅନ୍ତର୍ଦ୍ଧାନ ହୋଇଥିଲେ । ଗଲା ୨୭ ବର୍ଷ ହେଲା ବିଚରା ବୁଢ଼ାବାପା ଓ ମା' "ହା କୃଷ୍ଣ—ହା କୃଷ୍ଣ" ହୋଇ ପ୍ରାଣତ୍ୟାଗ କଲେ । ଦୀର୍ଘଦିନର ବ୍ୟବଧାନ ପରେ କୀର୍ତ୍ତିନଙ୍କୁ ପ୍ରଥମେ ବିଜୟଙ୍କୁ ଚହ୍ନିପାରି ଗାଡ଼ିରୁ ଓହ୍ଲାଇ ଭୁବନେଶ୍ୱର ରାଜରାସ୍ତା ଧାରରେ କୋଳାଗତ କଲେ । ଏହା ମଧ୍ୟରେ କୀର୍ତ୍ତିନକୃଷ୍ଣଙ୍କର ବିରାଟ ପରିବର୍ତ୍ତନ ହୋଇଛି । ମୁହଁରେ ଦାଢ଼ି, ମସ୍ତକରେ ଜଟା, ଦେହରେ ଗୈରିକ ପରିଧାନ, ପାଖରେ ନୂଆ ମାରୁତିକାର୍ । ଗାଡ଼ି ଭିତରେ ତାଙ୍କର ଶିଷ୍ୟ ଓ ଶିଷ୍ୟା । ତାଙ୍କର ମୁଖମଣ୍ଡଳ ତେଜୋଦୀପ୍ତ ଓ ପ୍ରସନ୍ନ । ହସହସ ମୁହଁ ଓ ହାତରେ ଆଶୀର୍ବାଦର ମୁଦ୍ରା । ଦୁଇବନ୍ଧୁ କିଛି ସମୟ କଥା ହେଲାପରେ ବିଜୟକୃଷ୍ଣ କିଛି ପଚାରିବା ପୂର୍ବରୁ ତାଙ୍କ ବାଲ୍ୟବନ୍ଧୁ କହିଲେ, "ଶୁଣ ବାବା ବିଜୟ—ମୁଁ ହୋଟେଲ ଭୁବନେଶ୍ୱର ଇଣ୍ଟରନ୍ୟାସନାଲଠାରେ କିଛିକାଳ ଅବସ୍ଥାନ କରୁଛି । ସନ୍ଧ୍ୟାବେଳକୁ ନିଶ୍ଚୟ ଆସିବ । ସେଇଠି ଆଳାପ ଆଲୋଚନା ।" ନୂଆ ମାରୁତି ଷ୍ଟାଲକ୍ସ୍‌ରେ କୀର୍ତ୍ତିନ ଚାଲିଗଲା ପରେ ବିଜୟ ତାଙ୍କର ପୁରୁଣା ଜିପ୍ ଚଢ଼ି ସ୍ୱଗୃହକୁ ଫେରିଲେ । ବାଟରେ ତାଙ୍କର ମନେପଡ଼ିଲା ଯେ ଗଲା ଦୁଇଦିନ ଧରି ଓଡ଼ିଶାର ସମସ୍ତ ସମ୍ବାଦପତ୍ରରେ ମହାରାଜ ପ୍ରେମସ୍ୱାମୀଙ୍କ ଭୁବନେଶ୍ୱର ଆଗମନ ଓ ଇଣ୍ଟରନ୍ୟାସନାଲ ପଞ୍ଚତାରକା ହୋଟେଲରେ ଅବସ୍ଥାନ ବିଷୟରେ ଯେଉଁ ସମ୍ବାଦ ପ୍ରକାଶିତ ହୋଇଛି, ସେଇ ମହାରାଜ ପ୍ରେମସ୍ୱାମୀ ବୋଧହୁଏ କୀର୍ତ୍ତିନକୃଷ୍ଣ । ଯାହାହେଉ ସାଧନାବଳରେ ମହାରାଜ ପ୍ରେମସ୍ୱାମୀ ଜଣେ ମହାନ୍ ଯୋଗୀ ହୋଇ-ଥିବେ—ନହେଲେ ଏକ ନାମଜାଦା ହୋଟେଲରେ ରହଣି ବ୍ୟବସ୍ଥା, ଦାମୀ ନୂଆ କାର୍, ଦେଶୀ-ବିଦେଶୀ ଶିଷ୍ୟ-ଶିଷ୍ୟା ଏସବୁ ସମ୍ଭବ ହୁଅନ୍ତା କିପରି ?

ପ୍ରେମସ୍ୱାମୀଙ୍କ ପୂର୍ବାପର ଜୀବନ ବିଷୟରେ ଚିନ୍ତାକଲାବେଳକୁ ଯେଉଁ ଦ୍ୱନ୍ଦ୍ୱ ମନକୁ ଆସିଲା ତାକୁ ମନ ଭିତରେ ରଖି ଥରେ ଯାଇ ବାବାଙ୍କୁ ହୋଟେଲରେ ଦେଖି ଆସିବାକୁ ଠିକ୍ କଲେ । ସନ୍ଧ୍ୟା ୭ଟା ବେଳକୁ କାହାକୁ ଘରେ କିଛି ନକହି ବାହାରିଗଲେ । ବାଟରେ ଚିନ୍ତାକଲେ ଯେ ଏତେଦିନ ପରେ ବାଲ୍ୟବନ୍ଧୁଙ୍କ ସହିତ ଦେଖା । ମାଟ୍ରିକ୍ ପରୀକ୍ଷାରେ ୩ଥର ଫେଲ୍ ହୋଇ ଘରୁ ପଳାଇଯାଇଥିବା କୀର୍ତ୍ତିନଙ୍କ ମହାନ୍ ଲୀଳା ଆଦି ବିଷୟରେ ମନରେ ନାନା ଭାବନା । ଯେତେହେଲେ ବାଲ୍ୟବନ୍ଧୁ, ନିଜ ଗାଁର ପିଲା । କେତେ ଖରା, ବର୍ଷା, ଶୀତ, ବସନ୍ତରେ ଗାଁର ଆମ୍ବତୋଟା, ନଈକୂଳ, କଅଁରୁଦା ପାଖରେ ବିତାଇଛନ୍ତି । ପରିବର୍ତ୍ତନଶୀଳ ସଂସାରରେ ଅସମ୍ଭବ ବେଳେବେଳେ ସମ୍ଭବ ହୋଇଯାଏ ।

ହୋଟେଲରେ ପହଞ୍ଚିବା ପରେ ବାବାଙ୍କ ଭି.ଆଇ.ପି. ରୁମ୍‌କୁ ଯିବା ଲୋକଙ୍କ ପାଇଁ ହୋଟେଲ ତରଫରୁ ଟିକେଟ୍ ବ୍ୟବସ୍ଥା କରାଯାଇଛି କେବଳ ପ୍ରବଳ ଭିଡ଼

ନିୟନ୍ତ୍ରଣ କରିବାପାଇଁ । ଭିଡ଼ ହେଲେ ଅପରାଧ ଓ ଆଇନ୍ ଶୃଙ୍ଖଳାଗତ ପରିସ୍ଥିତି ମଧ୍ୟ ସୃଷ୍ଟି ହେବ । ବିଜୟ ପକେଟରୁ କୋଡ଼ିଏଟଙ୍କା ନୋଟ୍ ଖଣ୍ଡିଏ ବାହାର କରି ପ୍ରବେଶିକା ଟିକଟ୍ ଧରି ବାବାଙ୍କ କୋଠରି ପର୍ଯ୍ୟନ୍ତ ଯିବାବାଟରେ ୩ଟି ସ୍ଥାନରେ ବାବାଙ୍କ ଶିଷ୍ୟଶିଷ୍ୟାମାନେ ତାଙ୍କୁ ପଚରାଉଚୁରା କରିବା ଢଙ୍ଗେ ସଙ୍ଗେ ତୀକ୍ଷ୍ଣ ଦୃଷ୍ଟିରେ ତାଙ୍କର ଚାଲିଚଳନ ପୋଷାକ ଉପରେ ସମ୍ଭାବ୍ୟ ଲୁକ୍କାୟିତ ଅସ୍ତ୍ରଶସ୍ତ୍ର ବିଷୟରେ ତନଖି କଲେ । ବୋଧହୁଏ ଆଜିକାଲି ସନ୍ତ୍ରାସବାଦୀ କାର୍ଯ୍ୟକଳାପ ବାବାଙ୍କ ପ୍ରତି ସୁରକ୍ଷାଗତ ଆଶଂକାକୁ ପ୍ରତିରୋଧ ସକାଶେ ବାବାଙ୍କ ପ୍ରିୟ ଶିଷ୍ୟ-ଶିଷ୍ୟାଙ୍କ ଏ ପ୍ରକାର ବ୍ୟବସ୍ଥା । ବିଜୟକୃଷ୍ଣ ବାବାଙ୍କ କନ୍‌ଫରେନ୍ସ ହଲ୍ ପାଖରେ ପହଞ୍ଚି ଦେଖିଲେ ଯେ ତାଙ୍କ ପୂର୍ବରୁ ବିଶିଷ୍ଟ ବ୍ୟବସାୟୀ, ଶିଳ୍ପପତି, ମନ୍ତ୍ରୀ, ସଚିବ ସବୁ ସ୍ଥାନ ଦଖଲ କରି ନେଇସାରିଲେଣି । ବସିବା ପାଇଁ ଛୋଟିଆ ସ୍ଥାନ ଟିକିଏ ପାଇଁ ସେ ଆଖିବୁଲାଇବା ସମୟରେ ବାବା ପ୍ରେମସ୍ୱାମୀ ଓରଫ କାର୍ତ୍ତିକକୃଷ୍ଣଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ିଗଲା । ବାବା ଆଶୀର୍ବାଦ ମୁଦ୍ରାରେ ଅଙ୍ଗୁଳି ନିର୍ଦ୍ଦେଶଦ୍ୱାରା ବିଜୟଙ୍କୁ ତାଙ୍କ ନିକଟକୁ ଆସିବା ନିର୍ଦ୍ଦେଶ ଦେବାମାତ୍ରେ ବାବାଙ୍କ ଆମେରିକା-ବାସିନୀ ପଟ୍ଟଶିଷ୍ୟା ଭଦ୍ରମହିଳା 'ମା-ଶାନ୍ତି' ତାଙ୍କୁ ଉପସ୍ଥିତ ଧନାଢ୍ୟ ଶିଳ୍ପପତି, ବ୍ୟବସାୟୀ, ମନ୍ତ୍ରୀ, ସଚିବ ଓ ସେମାନଙ୍କ ଗୃହିଣୀଙ୍କୁ ପାରିକରାଇ ବାବାଙ୍କ ନିକଟକୁ ବାଟକଢ଼ାଇ ନେଲେ । ବାବାଙ୍କ ପ୍ରତ୍ୟକ୍ଷ ଆଶୀର୍ବାଦ ଲାଭକରିବା ଯୋଗୁଁ ସବୁ ମାନ୍ୟଗଣ୍ୟ ସମ୍ମାନିତ ଭକ୍ତମାନଙ୍କ ଦୃଷ୍ଟି ବିଜୟଙ୍କ ଉପରେ ନିବଦ୍ଧ ହେଲା । ଆହା ! ସେ କେଡ଼େ ଭାଗ୍ୟବାନ୍ । ଯେଉଁମାନେ ପ୍ରଭୂତ ଅର୍ଥବ୍ୟୟ କରି ଦୂରଦୂରାନ୍ତରରୁ ପ୍ଲେନ୍, ଟ୍ରେନ୍ ଓ କାର୍ ଯୋଗେ ବାବାଙ୍କ ଦର୍ଶନ ପାଇଁ ଆସିଥିଲେ ସେମାନେ ବିଜୟଙ୍କ ଭାଗ୍ୟ ତୁଳନାରେ ନିଜନିଜର ଭାଗ୍ୟକୁ ନ୍ୟୂନ ମନେକଲେ । ବିଜୟ ସମବେତ ଭକ୍ତଙ୍କ ମଧ୍ୟରେ ତାଙ୍କ ବିଭାଗର ସଚିବ ଓ ତାଙ୍କ ସହଧର୍ମିଣୀଙ୍କୁ ଉପସ୍ଥିତ ଥିବା ଦେଖି ଲଜ୍ଜା ଓ ସଙ୍କୋଚରେ ତାଙ୍କ ମୁଣ୍ଡ ନଇଁଗଲା । ମା' ଶାନ୍ତି ବିଜୟଙ୍କୁ ବାବାଙ୍କ ସନ୍ନିକଟସ୍ଥ ଆସନରେ ବସିବାକୁ ନିର୍ଦ୍ଦେଶ ଦେବାମାତ୍ରେ, ବିଜୟ ନିଜକୁ ସଙ୍କଟଜନକ ପରିସ୍ଥିତିରୁ ରକ୍ଷାକରିବାକୁ ଯାଇ ଚଟ୍‌କରି ବସିପଡ଼ିଲେ । ବାବା କାର୍ତ୍ତିକକୃଷ୍ଣ ବିଜୟଙ୍କ ଚିକ୍କଣ କେଶହୀନ ମସ୍ତକ ଉପରେ ଆଶୀର୍ବାଦ ମୁଦ୍ରାରେ ହସ୍ତଚାଳନା କରିବା ସମୟରେ ସମସ୍ତଙ୍କ ଭକ୍ତିପୂର୍ଣ୍ଣ ଚକ୍ଷୁ ଓ ଦୃଷ୍ଟି ବିଜୟଙ୍କ ମସ୍ତକ ଉପରେ କେନ୍ଦ୍ରୀଭୂତ ହେଲା । ବିଜୟ ଯେଉଁ ପରିସ୍ଥିତିରେ ପଡ଼ି ନିଜ ମୁଣ୍ଡ ଉପରେ ବାବାଙ୍କ ହସ୍ତଚାଳନା ମୁଦ୍ରା ସହିଗଲେ, ବାବାଙ୍କ ସ୍ଥାନରେ ଅନ୍ୟ କେହି ଥିଲେ ବୋଧହୁଏ ସେ ଏପରି ହସ୍ତଚାଳନାକୁ ଯୁଦ୍ଧଂ ଦେହି ଡାକରାରେ ଜବାବ ଦେଇଥାନ୍ତେ । ସବୁ ଲୋକଙ୍କ ପ୍ରାୟ ଗୋଟିଏ ଦୁର୍ବଳ କେନ୍ଦ୍ର ଥାଏ । ବିଜୟଙ୍କ ଟାଙ୍ଗରାମୁଣ୍ଡ ତାଙ୍କର ସେହିପରି ଗୋଟିଏ ଦୁର୍ବଳ କେନ୍ଦ୍ର । ତାଙ୍କ ମୁଣ୍ଡ ବିଷୟରେ ଆଲୋଚନାକୁ ସେ ଅପମାନଜନକ ବୋଲି ଗ୍ରହଣ କରୁଥିବାବେଳେ ମୁଣ୍ଡ ଉପରେ

ହାତକୁ ଲଇବା ଅଧିକାର କେବଳ ତାଙ୍କ ପରଲୋକଗତ ପିତୃଦେବଙ୍କର ଥିଲା ବୋଲି ସ୍ୱୀକାର କରୁଥିଲେ । ତେଣୁ ତାଙ୍କ ମଜ୍ଜାଗତ ରକ୍ତରେ ପ୍ରତିକ୍ରିୟା ଘଟିଲେ ମଧ୍ୟ ସଭା ମଧ୍ୟରେ ମାନସିକ ପ୍ରତିକ୍ରିୟା ଉଦ୍ରେକ ହେବା ସଙ୍ଗେ ସଙ୍ଗେ ଲଭିଗଲା । ଉପସ୍ଥିତ କେତେକ ଭକ୍ତ ମଧ୍ୟ ହସ୍ତଗ୍ରହଣ ପ୍ରକ୍ରିୟାକୁ ଦେଖି ମୁହଁ ତଳକୁ କରି ହସ ବନ୍ଦକଲେ ।

ବିଜୟଙ୍କ ପରେ ବାବା ଗୀତିନକୃଷ୍ଣ ଅନ୍ୟ ସମସ୍ତ ସମବେତ ଭକ୍ତଙ୍କ ଦୁଃଖ, ଆପତ୍ତି, ଆବଶ୍ୟକତା ଆଦି ବିଷୟରେ ଶୁଣି ମହତ୍ତ୍ୱ ଉପଦେଶ ଦେଲେ । କେତେକ ଆଗ୍ରହୀ ଭକ୍ତ ବାବାଙ୍କ ମୁଖନିଃସୃତ ଅମୂଲ୍ୟ ଉପଦେଶଗୁଡ଼ିକୁ ଟେପ୍‌ରେ ଗ୍ରହଣ କରି-ନେଲେ । ଏତେ ଦୀର୍ଘସମୟ ବାବାଙ୍କ ସାନ୍ନିଧ ପାଇ ମଧ୍ୟ ବିଜୟ ବାବାଙ୍କ ମୁଖାବ-ଲୋକନ କରିପାରିନଥିଲେ କିମ୍ବା ଗୋଟିଏ ହେଲେ ପ୍ରଶ୍ନ ପଚାରି ପାରିନଥିଲେ । କାହିଁକି ଏପରି ଅସମନ୍ତପ ପରିସ୍ଥିତିର ମଧ୍ୟବର୍ତ୍ତୀ ହେବାକୁ ସେ ବାବାଙ୍କ ପାଖକୁ ଆସିଲେ ବୋଲି ଚିନ୍ତା କରୁଥାନ୍ତି ।

ରାତି ପ୍ରାୟ ବାରଟା ବେଳକୁ ସବୁ ଭକ୍ତ ବିଦାୟ ନେବାପରେ ବାବା ବିଜୟଙ୍କୁ ନିଜ ସ୍ୱତନ୍ତ୍ର କୋଠରୀକୁ ତାଙ୍କ ସଙ୍ଗେ ଯିବାପାଇଁ ଇଙ୍ଗିତରେ ଜଣାଇ ସଭାସ୍ଥଳ ପରିତ୍ୟାଗ କରିବାରୁ, ବିଜୟ ବାବାଙ୍କ ପଛେ ପଛେ ମନ୍ତ୍ରମୁଗ୍ଧବତ୍ ଚାଲିଲେ । ତାଙ୍କର ପୂର୍ବ ଅବସନ୍ନତା ଦୂରୀଭୂତ ହେଲା । ବାବା ନିଜ ପାଇଁ ନିର୍ଦ୍ଦିଷ୍ଟ କୋଠରୀରେ ପ୍ରବେଶ କରି ତାଙ୍କ ନିର୍ଦ୍ଦେଶ ତଥା ପରିଚର୍ଯ୍ୟା ପାଇଁ କୋଠରୀ ଦୁଆରେ ଅପେକ୍ଷାରତା ମା-ଶାନ୍ତି ଓ ଅନ୍ୟ ଜଣେ ବିଦେଶିନୀ ଶିଷ୍ୟାଙ୍କୁ କିଛି ସମୟ ପାଇଁ ସ୍ଥାନାନ୍ତର ହେବାକୁ ନିର୍ଦ୍ଦେଶ ଦେଲେ । ଏକାନ୍ତ ହେବାପରେ ବିଜୟକୃଷ୍ଣ ପଚାରିଲେ, "ଏସବୁ କି ଲୀଳା ଲଗାଇଛ ବାବା ଗୀତିନକୃଷ୍ଣ ?"—ବାଲ୍ୟବନ୍ଧୁଙ୍କ ପ୍ରଶ୍ନର ଉତ୍ତରରେ ବାବାଙ୍କ ମୁଖମଣ୍ଡଳରେ ସ୍ମିତହାସ୍ୟ ଖେଳିଗଲା ଓ ସେ କହିଲେ, "ତୁମେ ସଂସାରୀ ବିଜୟକୃଷ୍ଣ । ସ୍ତ୍ରୀ ପିଲାଙ୍କୁ ଧରି ଘରସଂସାରରେ ନିମଗ୍ନ—ମୋର ସ୍ତ୍ରୀପିଲା ନାହାନ୍ତି । ଗାଁରେ ପୈତୃକବାସ ଖଣ୍ଡିକ ଅଛି କି ନାହିଁ ଜାଣେନା । ଏବେ ତୁମେ ମୋର ବୋଲି ଯାହାଙ୍କୁ ଓ ଯାହା ଯାହା ଦେଖୁଛ ସେମାନେ ମୋର ସବୁକିଛି—ଘର ଓ ସଂସାର । ସାଧାରଣଭାବେ ତୁମେ ଘରସଂସାରୀ ଲୋକ ଏ ଗୂଢ଼ତତ୍ତ୍ୱ ବୁଝିପାରିବନି । ବୁଝିବାକୁ ସମୟ ଦରକାର ।" ବିଜୟକୃଷ୍ଣ ଭାବିଲେ—ହୋଇପାରେ । ବାବା ଗୀତିନକୃଷ୍ଣ ଓରଫ ପ୍ରେମସ୍ୱାମୀଙ୍କ ପାଖେ ସେପରି କିଛି ଅସାଧାରଣ ଗୁଣ ନଥିଲେ ଏତେ ବଡ଼ ବଡ଼ ଲୋକ, ବିଦ୍ୱାନ୍ ପଣ୍ଡିତମାନେ ତାଙ୍କ ପାଖକୁ ଆସନ୍ତେ କାହିଁକି ? ତେଣୁ ସେ କାଳବିଳମ୍ବ ନକରି କହିଲେ, "ମୁଁ କଅଣ ଭାଇ ଏସବୁ ଜାଣିଚି—ଲୋକଙ୍କୁ ସୁ ଚୁଖୁ ଚୁରେ ଚଲାଇବାକୁ ଯାଇ ମୁଣ୍ଡରୁ କେଶଡିକ ଉପୁଡ଼ିଗଲା । ଯାହା ପାଉଛି ଅଭାବ ନାହିଁ କି ଅସୁବିଧା ନାହିଁ—ହେଲେ

ପାଣବାଣକ କାରଣରୁ ମନରେ ଶାନ୍ତି ନାହିଁ ।" ଏତକ ଶୁଣି କୀର୍ତ୍ତିନକୃଷ୍ଣ ବାଲ୍ୟ-ବନ୍ଧୁଙ୍କ ଅଡ଼େ ଜିଜ୍ଞାସୁଦୃଷ୍ଟିରେ ଚାହିଁ ସବଶେଷ ଜାଣିବାକୁ ଚେଷ୍ଟା କଲେ । ବିଜୟକୃଷ୍ଣ କହିଲେ—"ସବୁ ଠିକ୍ ଚାଲିଛି ଭାଇ—କିନ୍ତୁ ମୋ ସ୍ତ୍ରୀ ପ୍ରଭାମୟୀଙ୍କ ଦୈନିକାଣ୍ଡ ଲାଗି ଗୃହଟି ମୋତେ ଶ୍ମଶାନ ପରି ଲାଗୁଛି ।" ସବୁ ଶୁଣିବାପରେ ବାବା କୀର୍ତ୍ତିନକୃଷ୍ଣ କହିଲେ, "ଠିକ୍ ଅଛି—ତୁମ ଘର ଠିକଣା ଦିଅ । କାଲି ସନ୍ଧ୍ୟା ୭ଟା ସମୟରେ ମୁଁ ଏକା ତୁମ ଘରେ ପହଞ୍ଚିବି । ଶ୍ରୀମତୀଙ୍କୁ କହିବ, ସେ ଉପସ୍ଥିତ ରହିବେ ।"

ବାବା କୀର୍ତ୍ତିନଙ୍କ ମୁଖନିଃସୃତ ବାଣୀ ଶୁଣି ବିଜୟ ଘରକୁ ଫେରିଲେ । ଘରକୁ ଗେଟ୍ ଖୋଲି ପ୍ରବେଶ କରୁ କରୁ ପ୍ରଭାମୟୀ ତାଙ୍କ ସିଂଟାଇପ୍ କ୍ୱାଟର୍ସର ଉପର ମହଲରେ ଥାଇ କହୁଥିବାର ଶୁଣିଲେ, "ଏତେଦିନ ପରେ ପୁଣି ସେଇ ମଦଖଟି କଥା ମନେପଡ଼ିଗଲା—ନା ଆଜି କଏ ପୁରୁଣା ମଦୁଆବନ୍ଧୁ ଜୁଟି ଭିଡ଼ି-ନେଲେ ।" ଭୁବନେଶ୍ୱରର ପ୍ରଖ୍ୟାତ କ୍ଲବ୍‌କୁ ପ୍ରଭାମୟୀ ମଦଖଟି ଆଖ୍ୟା ଦେଇଛନ୍ତି ଓ କ୍ଲବ୍‌କୁ ଆସୁଥିବା ବିଜୟଙ୍କ ବନ୍ଧୁମାନଙ୍କୁ ମଦୁଆ ସମ୍ବୋଧନ କରନ୍ତି । ତାଙ୍କ ପଣ୍ଡିତ ପିତାମହାଦି ଭାଙ୍ଗସେବନ କରୁଥିଲେ ଯାହା ପ୍ରଭାଙ୍କ ମତରେ ଦୂଷଣୀୟ ନୁହେଁ । କାରଣ ଭାଙ୍ଗର ବ୍ୟବହାର ଆମ ଦେଶରେ ଯୁଗ ଯୁଗ ଧରି ଚାଲିଆସୁଛି । ମଦ ବିଦେଶୀ ଓ କ୍ଲବ ଯିବା ଉଦ୍ଦେଶ୍ୟ ମଦ୍ୟପାନ ଓ ବିଦେଶୀ ଢଙ୍ଗରେ କୁଣ୍ଢିଆ-କୁଣ୍ଢି ନାଚ । ଉପରମହଲରୁ ପ୍ରଭାମୟୀଙ୍କ ପାଟି ଶୁଣୁଶୁଣୁ ଦାଣ୍ଡଘରେ ପହଞ୍ଚୁ ନପହଞ୍ଚୁ ପ୍ରଭା ଆସି ସେଠାରେ ହାଜର ହୋଇ, ସ୍ୱଭାବସୁଲଭ ଗର୍ଜନ ଆରମ୍ଭ କରିଦେଲେ । କିନ୍ତୁ ବିଜୟଙ୍କ ମୁହଁରେ କିଛି ପ୍ରତିକ୍ରିୟାର ଚିହ୍ନ ଦେଖିଲେ ନାହିଁ । ବିଜୟ ମୁହଁରେ ସାମାନ୍ୟ ହସ ଖେଳାଇ ଗୋଟାଏ ଚେୟାର ଟାଣି ବସିପଡ଼ି ବାବା ପ୍ରେମସ୍ୱାମୀଙ୍କ କଥା ଆରମ୍ଭ କଲେ । ପ୍ରଭା ଦେଖିଲେ ଆଜିହିଁ କେବଳ ବିଜୟଙ୍କ ଉପରେ ତାଙ୍କ କଟୂକ୍ତିର କୌଣସି ପ୍ରଭାବ ପଡ଼ିନାହିଁ । ପ୍ରଭାଙ୍କର ମନେହେଲା ଯେପରି ବିଜୟଙ୍କ ଆଜିର ଆଚରଣ ହିନ୍ଦୀ ସିନେମାର କୌଣସି ଗୋଟିଏ ଦୃଶ୍ୟ । ବାବାଙ୍କ ବିଷୟ ଶୁଣୁଶୁଣୁ ପ୍ରଭାମୟୀ ମଧ୍ୟ ଗୋଟିଏ ଚେୟାରରେ ବସି ତନ୍ମୟଭାବରେ ବିଜୟଙ୍କୁ ଚାହିଁରହିଲେ । ସମ୍ବାଦପତ୍ରରେ ବାବାଙ୍କ ଆଗମନ ବିଷୟରେ ଶୁଣି ପ୍ରଭା ମଧ୍ୟ ବାବାଙ୍କ ଦର୍ଶନ ପାଇଁ ଯିବାକୁ ଇଚ୍ଛା କରିଥିଲେ । ମାତ୍ର ବିଜୟକୃଷ୍ଣଙ୍କ ବାବା-ବିମୁଖତା କାରଣରୁ ଯିବା ବିଷୟରେ ସ୍ୱାମୀଙ୍କୁ କହିବାକୁ ସମୟ ଓ ସୁଯୋଗ ପାଇନଥିଲେ । ବିଜୟଙ୍କ ତରଫରୁ ବାବାଙ୍କ ବିଷୟ ଉତ୍ଥାପନ ପ୍ରଭା ମନରେ ଅପୂର୍ବ ଆନନ୍ଦ ଆଣିଦେଲା । କିନ୍ତୁ ବାବାଙ୍କ ଆଗମନ ବିଷୟକ ଶେଷପଦଟି ପ୍ରଭାଙ୍କ ମନକୁ ନପାଇବାରୁ ସଜୋରରେ ଚଉକି ଠେଲି ଉଠିପଡ଼ି ବିଜୟଙ୍କୁ ଧମକାଇ ତାଙ୍କ ଉକ୍ତିର ସତ୍ୟତା ବିଷୟରେ ସନ୍ଦେହ ପ୍ରକାଶ କଲେ । ବିଜୟ ସମସ୍ତପ୍ରକାର ରାଣ ନିୟମ

ଯଜ୍ଞାଇମ୍ବାର ଶେଷରେ ଠାକୁରଙ୍କ ନାମରେ ଶପଥ କଲାପରେ ପ୍ରଭାଙ୍କର ସାମାନ୍ୟ ବିଶ୍ୱାସ ଆସିଲା ଯେ ବାବା ପ୍ରେମସ୍ୱାମୀ ସ୍ୱଶରୀରରେ ପ୍ରଭାଙ୍କ ବାସଭବନରେ ପଦାର୍ପଣ କରିବେ । ବିଶ୍ୱାସ ଓ ଅର୍ଦ୍ଧବିଶ୍ୱାସ ଭିତରେ ପ୍ରଭାମୟୀ ମାନସିକ ପ୍ରସ୍ତୁତିରେ ଲାଗି-ପଡ଼ିଲେ । ପରଦିନ ସକାଳେ ବିଜୟ ଅଫିସ୍ ବାହାରିବା ଦେଖି ତାଙ୍କ ଅବିଶ୍ୱାସର ଧୂଆଁ ଅଧିକ ଘନୀଭୂତ ହୋଇଗଲା । ବିଜୟଙ୍କୁ କହିଲେ, 'ଏତେବଡ଼ ପ୍ରସିଦ୍ଧ ବାବା ଆଜି ସନ୍ଧ୍ୟାକୁ ଆସିବେ ବୋଲି କାଲି ରାତିରେ କହିବାସତ୍ତ୍ୱେ ଆଜି କଅଣ ପୁଣି ଅଫିସକୁ ବାହାରିଲଣି ? ମୋ ସାଙ୍ଗରେ ଫେର୍‌କାମି ? ରାତିକୁ ଗୋଟେ କଥା—ସକାଳକୁ ଆଉ ଗୋଟେ ।'' ବିଜୟକୃଷ୍ଣ ଭାବିଲେ ବାବା ତାଙ୍କର ବାଲ୍ୟବନ୍ଧୁ ହୋଇ-ପାରନ୍ତି—ମାତ୍ର ପ୍ରଭାମୟୀ ଓ ବାକି ଜଗତଙ୍କ ଆଖିରେ ସେ ଜଣେ ପୃଥିବୀପ୍ରସିଦ୍ଧ ବାବା ପ୍ରେମସ୍ୱାମୀ । ତେଣୁ ସେ ଦିନକ ପାଇଁ ପ୍ରଭାଙ୍କୁ ସହାୟତା ନକରି ଅଫିସ୍ ଯିବା ଓ ଛୁଟି ନନେବା ଏକାନ୍ତ ଅସମୀଚୀନ ଓ ଗର୍ହିତ ଅପରାଧ ନିଶ୍ଚୟ ।

ତେଣୁ ପିଅନ ହାତରେ ଛୁଟି ଦରଖାସ୍ତ ପଠାଇଦେଇ ପ୍ରଭାଙ୍କ ସହିତ ବାଲ୍‌ଟିରେ ପାଣିବୋହି ଦାଣ୍ଡଘର ଧୂଆପୋଛା, ବିଭିନ୍ନ ଠାକୁର ବନ୍ଧାଇ ଫଟୋ ସବୁ ସଜାଇବା ଆଦି କାର୍ଯ୍ୟରେ ଦିନଯାକ ପ୍ରଭାଙ୍କୁ ସହଯୋଗ କଲେ । ପ୍ରଭାଙ୍କ ସନ୍ଦେହ ମଝି ମଝିରେ ଉଙ୍କି ମାରୁଥାଏ ଓ ବିଜୟଙ୍କୁ ଧମକି ଦେଇ ପଚାରୁଥାନ୍ତି "ବାବା ଯଦି ସତରେ ସନ୍ଧ୍ୟାକୁ ନଆସିଲେ—ତେବେ ତୁମେ ଘରେ ପଶି-ପାରିବନି ।'' ବିଜୟକୃଷ୍ଣ କହନ୍ତି—"ନିଶ୍ଚୟ ଆସିବେ—ତୁମର ଭକ୍ତି ଓ ବିଶ୍ୱାସ ଥିବା ଦରକାର ।''

ସ୍କୁଲ କଲେଜରୁ ପିଲାମାନେ ଫେରିବାପରେ ପ୍ରଭା ସେମାନଙ୍କୁ ଅଧଘଣ୍ଟାଏ ବ୍ରିଫିଙ୍ଗ୍ କଲେ । କିପରି ବାବା ଆସିଲେ ତାଙ୍କ ପାଦଛୁଇଁ ମୁଣ୍ଡିଆ ମାରିବାକୁ ହେବ—ଚୁପ୍‌ଚାପ୍ ବସି ତାଙ୍କ କଥା ଶୁଣିବାକୁ ହେବ ଇତ୍ୟାଦି । ପ୍ରଭାମୟୀ ସ୍ନାନାନ୍ତେ ମଠାଶାଢ଼ି ପରିଧାନ କରି ଉପର ମହଲରେ ପଦଚାରଣ ଓ ପ୍ରତୀକ୍ଷା କରିବା ସମୟରେ ବିଜୟକୃଷ୍ଣ ଫୁଲ, ଧୂପ, ଦୀପ, ଚନ୍ଦନ, ଆସନାଦି ସଜାଉଥାନ୍ତି । ପ୍ରତୀକ୍ଷା ଭିତରେ ପ୍ରଭାମୟୀ ଦୁଇ ତିନଥର "କଉ—କାହାନ୍ତି ତୁମ ବାବା'' ବୋଲି ପଚାରି ସାରିଥା'ନ୍ତି । ବିଜୟ କହୁଥାନ୍ତି ବାବା ସାତଟାବେଳେ ଆସିବାକୁ କହିଛନ୍ତି । ସାତଟା ବାଜିବାକୁ ଅପେକ୍ଷା କର ।

କାନ୍ଥଘଣ୍ଟା ସାତଟା ବାଜିବାର ସୂଚନା ଦେବା ସଙ୍ଗେ ସଙ୍ଗେ ଗେଟ୍‌ଠାରୁ ଖଣ୍ଡେ ଦୂରରେ ଦୁଇଟି କାର୍ ଗେଟ୍‌ଆଡ଼କୁ ଆସିବା ଦେଖି, ପ୍ରଭାମୟୀ ଡାକ-ପକାଇଲେ—"ଶୁଣ···ତାଙ୍କୁ କହ···ଆସିଗଲେ ବୋଧହୁଏ ।'' କହୁକହୁ ଏକା-ନିଶ୍ୱାସରେ ତଳକୁ ଆସି ପହଞ୍ଚିଲା ବେଳକୁ ବାବାଙ୍କ ମାରୁତିକାର୍ ଗେଟ୍ ଡେଇଁ

ଅସିଲା । ପିଲାଙ୍କୁ ନିର୍ଦ୍ଦେଶଦେବା ସଙ୍ଗେ ସଙ୍ଗେ ପ୍ରଭୁ ବାହାର ପୋର୍ଟିକୋରେ ଅପେକ୍ଷା କରିବା ଅବସ୍ଥାରେ ବାବା ପ୍ରେମସ୍ୱାମୀ ସ୍ୱଶରୀରରେ କାର୍‌ରୁ ଅବତରଣ କଲେ । ସଙ୍ଗରେ ନିଜସ୍ୱ ଶିଷ୍ୟ 'ମା ଶାନ୍ତି' ଥା'ନ୍ତି । ଅନ୍ୟ ଶିଷ୍ୟଶିଷ୍ୟାମାନେ ଆଉ ଗୋଟିଏ କାର୍‌ରେ ଗେଟ୍ ବାହାରେ ଥିବା ଅବସ୍ଥାରେ ସେମାନଙ୍କୁ ଗାଡ଼ି ଭିତରେ ବସିବାକୁ ବାବାଙ୍କ ନିର୍ଦ୍ଦେଶ ଥିଲା ।

ବାବା ପ୍ରେମସ୍ୱାମୀ ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ଆସନ ଅଳଂକୃତ କଲେ । ପ୍ରଭୁମୟୀ ଭକ୍ତିବିହ୍ୱଳ ଚିତ୍ତରେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ତାଙ୍କ ମୁଣ୍ଡ ତଳେ ଲାଗିଲାବେଳେ ପିଲାମାନଙ୍କ ମଧ୍ୟରୁ ଜଣେ ଲମ୍ବହୋଇ ପଡ଼ିଗଲା । କଲେଜପଢ଼ୁଆ ବଡ଼ଝିଅଟି କବାଟ ଫାଙ୍କରୁ ଏସବୁ ଦେଖି ମମିଙ୍କ ଅଗୋଚରରେ ଦୁଆର ପାଖରୁ ଖସି ଚାଲିଗଲା । ବାବା ପ୍ରଭୁଙ୍କୁ ଆଶୀର୍ବାଦ କଲେ । ପ୍ରଭୁ ଓ ବିଜୟକୃଷ୍ଣ ବାବାଙ୍କ ନିକଟରେ ଚକାପକାଇ ବସିଲା ପରେ ବାବା କିଛି ସମୟ ପାଇଁ ଯୋଗାସନରେ ଧ୍ୟାନମଗ୍ନ ହେଲେ—ନେତ୍ର ଯୁଗଳ ଅର୍ଦ୍ଧନିମୀଳିତ—ହସ୍ତଦ୍ୱୟ ଧ୍ୟାନମୁଦ୍ରାରେ । ଧ୍ୟାନ ଭାଙ୍ଗିବା ପରେ ବାବା ପ୍ରଭୁଙ୍କ ଆଡ଼େ ଦୃଷ୍ଟି ଫେରାଇ କହିଗଲେ—ବିଜୟଙ୍କ ସ୍ୱଭାବ, ଚରିତ୍ର ଓ ତାଙ୍କର ଭବିଷ୍ୟତ ବିଷୟରେ । ଯଥା ପ୍ରଭୁଙ୍କ ସନ୍ତାନସନ୍ତତିମାନେ ନିଶ୍ଚୟ ଭବିଷ୍ୟତରେ ଉତ୍ତମ ମଣିଷ ହେବେ—ଦେଶ ବିଦେଶରେ ସୁନାମ ଅର୍ଜନ କରିବେ, ଇତ୍ୟାଦି । ପିଲାଙ୍କ ଭବିଷ୍ୟତ ବିଷୟ ଶୁଣିଲାବେଳେ ପ୍ରଭୁମୟୀ ଭାବବିହ୍ୱଳ ହୋଇ ନିର୍ନିମେଷ ନୟନରେ ବାବାଙ୍କୁ ଚାହିଁରହିଥାନ୍ତି । ତାଙ୍କ ମାନସଚକ୍ଷୁରେ ପୁଅ ଉପରେ ବୋଇଂ ବିମାନରେ ବସି ଆମେରିକା, ଋଷିଆ ଆଡ଼େ ଚାଲିଯାଉଛି ସେହି ଚିତ୍ର ଉଦ୍‌ଭାସିତ ହୋଇଯାଉଥାଏ । ପ୍ରଭୁଙ୍କ ତନ୍ମୟତା ଦେଖି ବାବା ଏକାନ୍ତରେ ପ୍ରଭୁଙ୍କୁ ବିଜୟକୃଷ୍ଣଙ୍କ ସ୍ୱାସ୍ଥ୍ୟ ଓ ମାନସିକ ଅବସ୍ଥା ପ୍ରତି ଅଧିକ କର୍ତ୍ତବ୍ୟ-ପରାୟଣା ହୋଇ ତୀକ୍ଷ୍ଣ ଦୃଷ୍ଟି ରଖିବାକୁ ନିର୍ଦ୍ଦେଶ ଦେଲେ । ଏହାପରେ ବାବା ତାଙ୍କର ଅଲୌକିକ ଦୈବୀଶକ୍ତିର ପ୍ରକାଶ ପୂର୍ବକ ଶୂନ୍ୟରେ ହାତ ବୁଲାଇ କିଛି ବିଭୂତି ସୃଷ୍ଟିକରି ପ୍ରଭୁଙ୍କୁ ଅର୍ପଣ କରି ଛଅଅଣା ଓଜନ ରୁପା ତେଜିଁରିଆ ଭିତରେ ରଖି ଶନିବାର ଦିନ ବାମ ବାହୁରେ ଧାରଣ କରିବାକୁ ଆଦେଶ ଦେଲେ । ଶୂନ୍ୟରୁ ବିଭୂତି ପ୍ରସାଦ, ଉପସ୍ଥିତ ସମସ୍ତଙ୍କୁ ବଣ୍ଟିତ କେତ କରିଦେଲା । ବାବା ଯିବାପାଇଁ ପ୍ରସ୍ତୁତ ହେଲେ ଓ ଉଠିପଡ଼ିଲେ । ପ୍ରଭୁମୟୀ ଥାଳିରେ ସଜାଡ଼ି ରଖିଥିବା ଫଳମୂଳ ସେହିପରି ରହିଗଲା । ଜଣାପଡ଼ିଲା ଯେ ବାବା କେଉଁଠି ହେଲେ କାହାର ଘରୁ କୌଣସି ଆହାର୍ଯ୍ୟ କିମ୍ବା ପାନୀୟ ସ୍ପର୍ଶ ମଧ୍ୟ କରନ୍ତି ନାହିଁ । ମା'ଶାନ୍ତି ଓ ବାବା କାର୍ତ୍ତିକକୃଷ୍ଣ ବିଜୟକୃଷ୍ଣଙ୍କ ଘରୁ ବିଦାୟ ନେଲେ ।

ପରଦିନ ଦେଖାଗଲା ପ୍ରଭୁମୟୀଙ୍କ ବିରାଟ ପରିବର୍ତ୍ତନ । ସୂର୍ଯ୍ୟୋଦୟ ପୂର୍ବରୁ ସ୍ନାନସନ୍ଧ୍ୟା ନିତ୍ୟକର୍ମାଦି ସମାପନ କରି ସାତଟା ବେଳକୁ ନିଜ ହାତରେ ଜଳଖିଆ ତିଆରି କରୁଥିବାର ଦେଖାଗଲା । ପୂର୍ବଦିନମାନଙ୍କରେ ସେଇ ସାତଟା ସମୟରେ

ପ୍ରଭୁଙ୍କ ବେଡ଼୍‌ରୁମ୍ ବାରଣ୍ଡାରେ ବସି ପ୍ରଥମ କପ୍ ଚା’ପାନ ପରେ ଦ୍ୱିତୀୟ କପ୍ ପାଇଁ ବରାଦ ଦେବାର ଦେଖାଯାଉଥିଲା । ତା’ଛଡ଼ା ସକାଳୁ ସକାଳୁ ପ୍ରଭୁଙ୍କ ନିଦ୍ରାଭଙ୍ଗକାଳୀ ମେଘଗମ୍ଭୀର ଗର୍ଜନର କୌଣସି ସୂଚନା ସେଦିନ ଦେଖାଗଲା ନାହିଁ । ବିଜୟ ସ୍ନାନାଦି ସାରି ତଳଘରକୁ ଆସିବାବେଳକୁ ପ୍ରଭୁ ତାଙ୍କନିଙ୍କ ଟେବୁଲ ଉପରେ ସ୍ୱହସ୍ତରେ ବ୍ରେକ୍‌ଫାଷ୍ଟ ସଜାଡ଼ି ଅପେକ୍ଷା କରିଥାନ୍ତି । ଏସବୁ ଅପ୍ରତ୍ୟାଶିତ ପରିବର୍ତ୍ତନ ବିଜୟଙ୍କୁ ନୂଆ ନୂଆ ଲାଗିଲା । ସେଦିନ ଅଫିସରୁ ଲଞ୍ଚପାଇଁ ଘରକୁ ଫେରି ଦେଖିଲେ ପ୍ରଭୁପତ୍ନୀ ତାଙ୍କୁ ଅପେକ୍ଷା କରି ରହିଛନ୍ତି । କିନ୍ତୁ ପୂର୍ବେ ବିଜୟଙ୍କ ଲଞ୍ଚ ଟାଇମ୍ ଓ ପ୍ରଭୁଙ୍କ ଗାଧୁଆ ଟାଇମ୍ ସଙ୍ଗେ ସମାନ ରହୁଥିଲା । ବିଜୟ ଲକ୍ଷ୍ୟ କଲେ ଗୃହର ପୂଜାରୀଙ୍କ ମୁହଁରେ ପରିତୃପ୍ତି ଓ ସନ୍ତୋଷର ପରିପ୍ରକାଶ । ନିଦାଘ ଗ୍ରୀଷ୍ମର ଝାଞ୍ଜି ପବନରେ ଝାଉଁଳି ଯାଇଥିବା ବୃକ୍ଷଲତା ଯେପରି ବର୍ଷାପାତ ପରେ ସତେଜ ହୋଇଉଠନ୍ତି ସେହିପରି ଘରେ ସମସ୍ତଙ୍କର ଅବସ୍ଥା ବିଜୟକୃଷ୍ଣ ଲକ୍ଷ୍ୟ କଲେ । ଏପରିକି ପୋଷାକୁକୁର ଜନ୍ ମଧ୍ୟ ତାର ପ୍ରଭୁଭକ୍ତି, ସ୍ୱାଗତ ସମ୍ଭାଷଣ ଓ ଆଚରଣରେ ନୂତନତ୍ୱ ପ୍ରକାଶ କରି ନୂଆ ଆନନ୍ଦରେ ଲାଙ୍ଗୁଡ଼ ହଲାଇ ହଲାଇ ପ୍ରଭୁଙ୍କ ପଛରେ ତଳକୁ ଓହ୍ଲାଇଲା । ପ୍ରଭୁ କଥାବାର୍ତ୍ତା କରିବା ସମୟରେ ତାଙ୍କ ମୁହଁକୁ ଚାହିଁ ଧୀରେ ଧୀରେ ଲାଞ୍ଜ ହଲାଇ ଯେପରି ଆଦେଶକୁ ଅପେକ୍ଷା କଲା ।

ଖାଇବା ସମୟରେ ବିଜୟକୃଷ୍ଣ ଭାବିଲେ ଏ ତ ସେଇ ଘର । ଘରେ ସେଇ ଲୋକମାନେ ତ ଅଛନ୍ତି, ଆସବାବପତ୍ରରେ ମଧ୍ୟ କୌଣସି ହ୍ରାସବୃଦ୍ଧି ଘଟିନାହିଁ । ତେବେ ଏସବୁ ଅପରିବର୍ତ୍ତିତ ପରିସ୍ଥିତିରେ ବିରାଟ ପରିବର୍ତ୍ତନର ଉତ୍ସ କିଏ ?

ସେଦିନ ଉପରବେଳା ବାବା ପ୍ରେମସ୍ୱାମୀ ଓରଫ କୀର୍ତ୍ତନକୃଷ୍ଣ ଦିଲ୍ଲୀ ଫେରିଯିବାର କାର୍ଯ୍ୟକ୍ରମ ଥିବା ଜାଣି ଦେଖା କରିବାକୁ ଏୟାରପୋର୍ଟକୁ ଯାଇଥାନ୍ତି ବିଜୟ । ବାବା ଭି. ଆଇ. ପି. ଲାଉଞ୍ଜରେ ବସିଥାନ୍ତି । ଅନେକ ଶିଷ୍ୟଶିଷ୍ୟା ବାବାଙ୍କ ବିଦାୟକାଳୀନ ଦର୍ଶନ ପାଇଁ ଜମା ହୋଇଥାନ୍ତି । ବିଜୟ ଭିଡ଼ ଭିତରେ ବହୁକଷ୍ଟ ସ୍ୱୀକାର କରି ବାବାଙ୍କୁ ଦର୍ଶନ ପାଇଁ ସମୀପସ୍ଥ ହେଲେ । ବାବା ପ୍ଲେନ୍ ପାଖକୁ ଯିବା ପାଇଁ ଲାଉଞ୍ଜ ଛାଡ଼ି ବାହାରିବା ସମୟରେ ଅସ୍ପଷ୍ଟ ସ୍ୱରରେ ବିଜୟ ପଚାରିଲେ, “ଖାଇ କି ମେଡ଼ିସିନ୍ ଦେଲ—ଦିନକ ମଧ୍ୟରେ ବିରାଟ ପରିବର୍ତ୍ତନ !” ବାବା ସ୍ମିତହାସ୍ୟ ସହକାରେ ଉତ୍ତର ଦେଲେ, “ବିଭୂତି ଦେଇଥିଲି—ବାବାଙ୍କ ବିଭୂତି ।” ଖାଲି ତୁମ ଗୃହିଣୀ ନୁହନ୍ତି ତୁମ ସାଙ୍ଗ ବା ଅନ୍ୟ କାହାର ଗୃହିଣୀ ଏପରି ରୋଗଗ୍ରସ୍ତା ହେଲେ ବାବାଙ୍କ ବିଭୂତି ଉଲ୍ଲିଖିତ ପ୍ରକାରେ ତେଉଁରିଆରେ ପରିଧାନ କଲେ ସବୁ ଠିକ୍ ହୋଇଯିବ ।

# ପୂର୍ବାପର

ଅଫିସରୁ ଫେରି ଘରେ ପହଞ୍ଚିଲା ବେଳକୁ ସେଦିନ ଡେରି ହୋଇ-ଯାଇଥିଲା । ଡ୍ରଇଂରୁମ୍‌ରେ ଭିଡ଼ । ପ୍ରଭାମୟୀ ସୋଫା ଉପରେ ଜମେଇ ବସିଥାନ୍ତି । ପିଲାମାନଙ୍କ ମଧ୍ୟରୁ କିଏ ତକିଆଟିଏ ଧରି ହାମୁଡ଼େଇ ପଡ଼ିଥାଏ ତ କିଏ ଗୋଡ଼ଲମ୍ବେଇ ବସିଥାଏ । ଉତ୍କଣ୍ଠାର ସହିତ ସମସ୍ତେ ଟେଲିଭିଜନ ଆଡ଼େ ଚାହିଁରହିଥାନ୍ତି, ନୂଆ ଟି. ଭି. ସିରିୟାଲ ଆରମ୍ଭ ହେବ । ମାଘ ସପ୍ତମୀ ଦିନ କୋଣାର୍କ ମହୋଦଧି ତୀରରେ ଲକ୍ଷ ଲକ୍ଷ ପ୍ରଥମ ସୂର୍ଯ୍ୟ ଦର୍ଶନାଭିଳାଷୀ ଯାତ୍ରୀ ଯେପରି ଏକାଗ୍ରତାରେ ଦୂର ଦିଗ୍‌ବଳୟ ଆଡ଼େ ସୂର୍ଯ୍ୟଙ୍କ ଉଦୟପଟକୁ ଚାହିଁ ରହିଥାନ୍ତି, ପ୍ରଭାମୟୀ ଏବଂ ତାଙ୍କର ସନ୍ତାନମାନଙ୍କର ଏକାଗ୍ରତା ଭାବ କୌଣସି ଗୁଣରେ କମ୍ ନଥିଲା । ଡ୍ରଇଂରୁମ୍‌ର କବାଟ ଠେଲି ପାଦ ଦେଉଁ ନଦେଉଁ, ପ୍ରଭାମୟୀ ଧ୍ୟାନଭଗ୍ନ ଦୁର୍ବାସାଙ୍କ ପରି ଡିମା ଡିମା ଆଖିରେ ଗର୍ଜନ କରି ତିରସ୍କାର ପ୍ରାୟ ଭାଷାରେ କହିଲେ, "କେତେଥର କହିଲଣି ଗୋଟେ ରଙ୍ଗିନ ଟି. ଭି. ଆଣିବାକୁ ? ସେଇ ପୁରୁଣା କଳାଧଳା ରୋହଣୀ...କୋଣାର୍କ ଟି. ଭି. । ଅଜା ଅମଳରୁ କଣା ହେଲଣି ଯେ ନାତୁଣୀ ଦେଖିଲେଣି । ସାମଲ ବାବୁଙ୍କ ସୂର୍ଯ୍ୟ ଡିଲକ୍ସ ରଙ୍ଗିନ ଟି. ଭି. ଥରେ ଦେଖିଲେ ଏ ନିଆଁ ଲଗା କଳାଧଳାକୁ ଖତ-ଗଦାରେ ଫୋପାଡ଼ ଦେଇଆସନ୍ତ ।" ମା'ଙ୍କ ସାଙ୍ଗରେ ତାଳଦେଇ ସାନଝିଅ କହିଉଠିଲା ହଁ ଡାଡି ଗୋଟେ କଲର ଟି. ଭି. ଆଣ । ଏ ଟି. ଭି.ରେ କ୍ରିକେଟ କିଛି ଭଲ ଦିଶୁନି । ନଟ୍ ଆଟ୍ ଅଲ ଇଣ୍ଟେରେଷ୍ଟିଂ । ଝିଅଙ୍କ କଥା ସରୁ ନସରୁ ମା' ଅଳ୍ପ କର୍କଶ ଗମ୍ଭୀର ସ୍ୱରରେ କହିଲେ, "ଶୁଣ ଆଟାଚିଟା ଉପର ଘରେ ଥୋଇଦେଇ ଏ ଘରକୁ ଆସ । ଚା' ଫା' ଯାହା ଖାଇବ ଏଇ ଘରେ ବସି ଖାଅ । ଟି. ଭି. ସିରିୟାଲ ଆରମ୍ଭ ହେଲେ, ଫର୍ ଗଡ୍‌ସେକ୍ ଡୋଣ୍ଟ୍ ଡିଷ୍ଟର୍ବ ମି ।"

ଅଫିସ ଫେରନ୍ତା ଗୋଳମାଳିଆ ମୁଣ୍ଡଟାକୁ ମା' ଝିଅଙ୍କ କର୍କଶ-ମଧୁର କଥାରେ ଅଧିକା ଗୋଳମାଳିଆ ହେବାକୁ ନଦେଇ ଚୁପ୍‌ଚାପ୍ ଡ୍ରଇଂରୁମ୍‌ରୁ ବାହାରି ଉପରମହଲରେ ମୋ ବେଡ୍‌ରୁମ୍‌କୁ ପଶିଲି । ପାହାଚ ଉଠିଲାବେଳେ ମନେମନେ

ଟି.ଭି ଉତ୍ପାଦନକାରୀଙ୍କୁ ଅଶେଷ ଧନ୍ୟବାଦ ଦେବାକୁ ଲାଗିଲି । ଯାହାହେଉ, ଏତେଦିନ ପରେ ଏଇ କ୍ଷୁଦ୍ର ଯନ୍ତ୍ରଟି ଯେତେ ଓଡ଼ାଖିଆ ଓଲେଇ ଗାଈ, ବୁଲା ଷଣ୍ଢଗୁଡ଼ାକୁ ଖୁଆଡ଼ ଭିତରେ ରଖିପାରିଲା । ଅଳ୍ପ କେତେଟା ବର୍ଷ ତଳେ ଖୋଦ୍ ରାଜଧାନୀ ଭୁବନେଶ୍ୱରର ଯେତେ ରାସ୍ତାକଡ଼ କଲଭର୍ଟ ଥିଲା, ସନ୍ଧ୍ୟା ହେଉ ନହେଉଣୁ ଏ ବୁଲା ଷଣ୍ଢଗୁଡ଼ାକ ତା' ଉପରେ ଜମେଇ ବସୁଥିଲେ । ପାନଦୋକାନ ଆଗରେ ଭିଡ଼ ବାନ୍ଧୁଥିଲେ । ସିନେମାହଲ ଆଗ ରାସ୍ତାରେ ବାଟ ଓଗାଳି ଠିଆ ହେଉଥିଲେ । ଏମାନଙ୍କର ଯେଉଁ ଉତ୍ପାତ, ପୁଲିସବାଲାଏ ଏମାନଙ୍କୁ କାଞ୍ଜିଆହୋଦାରେ ପକାଇବା ତ ଦୂରର କଥା, ଏମାନଙ୍କ ଲାଙ୍ଗୁଡ଼ରେ ହାତ ମାରିବା କାଠିକର ପାଠ ହେଉଥିଲା । ବର୍ଷ ବର୍ଷ ଧରି ଯାହା ପୁଲିସ୍‌ବାଲାଙ୍କ ଠେଙ୍ଗୁଣି କରିପାରିନଥିଲା, ଏଇ କ୍ଷୁଦ୍ର ଯନ୍ତ୍ରଟି ଅଳ୍ପ ଦିନ ମଧ୍ୟରେ ତାହା କରିବା ପାଇଁ ସକ୍ଷମ ହେଲା । ଏବେ ବେଳ ବୁଢ଼ାବୁଢ଼ା ଛକ କଲଭର୍ଟ, ପାନଦୋକାନ ଏପରିକି ରବିବାର ଦିନ ସିନେମା ହଲ ସବୁ ଖାଲି । ଡ୍ରଇଂରୁମ୍ ରୂପକ ଗୁହାଳ ଘରେ ସବୁଗୁଡ଼ାକ ପଶିଯାଇ ମହାଦେବଙ୍କ ବାହୁଆ ଷଣ୍ଢଙ୍କ ପରି ଏକାଗ୍ର ଚିତ୍ତରେ କ୍ଷୁଦ୍ର ଟି. ଭି. ପରଦା ଆଡ଼େ ଧ୍ୟାନମଗ୍ନ ।

ଉପରମହଲରେ ଲୁଗାପଟା ବଦଳାବାବେଳେ ମୋର ପିଲାଦିନ କଥାଟିଏ ମନେପଡ଼ିଲା । ୧୯୫୦ ମସିହା ବେଳର କଥା । ସେତେବେଳେ ନୂଆ ନୂଆ ହୋଇ ସରକାର ଗାଁଗଣ୍ଡାକୁ କମ୍ୟୁନିଟି ସେଟ୍ ରେଡ଼ିଓ ବ୍ଲକ୍ ମାଧ୍ୟମରେ ଦେଉଥାନ୍ତି । ଗାଁ ଗାଁରେ ଯୁବକ ସଂଘ, ମହିଳାସମିତି ଗଢ଼ା ହୋଇ ବ୍ଲକ୍‌ଠାରୁ ରେଡ଼ିଓ ଆସୁଥାଏ । ଆମ ଗାଆଁରେ ଗୋଟେ ଯୁବକ ସଂଘ, ଗୋଟେ ମହିଳାସମିତି ଗଢ଼ା ହେଲା । ସମସ୍ତଙ୍କ ନିଷ୍ପତ୍ତି ଅନୁଯାୟୀ ଗାଁ ମାଛ ପୋଖରୀରୁ ମାଛ ବିକ୍ରୀ ଟଙ୍କା ଏବଂ କୋଠ ଅମ୍ବତୋଟାରୁ ଅମ୍ବବିକ୍ରୀ ଟଙ୍କାରୁ ପଞ୍ଚସ୍ତରିଟଙ୍କା ନେଇ ବ୍ଲକ୍‌ରେ ଜମା ଦିଆଗଲା ଗୋଟେ କମ୍ୟୁନିଟି ସେଟ୍ ରେଡ଼ିଓ ଆଣିବାପାଇଁ । ଯୁବକ ସଂଘର ସମ୍ପାଦକ ବି.ଡି.ଓ.ଙ୍କୁ ପାଞ୍ଚ ଦଶଥର ସାକ୍ଷାତ କଲାପରେ, ଗାଁ ଯୁବକ ସଂଘକୁ ଗୋଟେ ରେଡ଼ିଓ ଦେବେ ବୋଲି ଦିନ ଧାର୍ଯ୍ୟକରି ବି.ଡି.ଓ. ଆଦେଶ ଦେଲେ ।

ଧାର୍ଯ୍ୟଦିନର ପ୍ରତ୍ୟୁଷରୁ ଯୁବକ ସଙ୍ଘର ସମ୍ପାଦକ ନିଧି ମକଦ୍ଦମେ ଓରଫ ନିଧିଦାସେ (ଆଗେ ମକଦ୍ଦମୀ ଥିଲା ଏବଂ ମକଦ୍ଦମୀ ଥିବା ଲୋକଙ୍କୁ ସମ୍ମାନ ସହ ମକଦ୍ଦମେ ବୋଲି ଡାକୁଥିଲେ) ଗୋଟେ ଭାରୁଆ ନେଇ ବ୍ଲକ୍‌ଆଡ଼େ ଚାଲିଲେ । ଗାଁ ଠାରୁ ବ୍ଲକ୍‌ଅଫିସ୍ ପନ୍ଦର କିଲୋମିଟର ରାସ୍ତା ଚାଲି ଚାଲି ଯିବାଛଡ଼ା ଉପାୟ ନଥିଲା । ନିଧି ମକଦ୍ଦମେ ବ୍ଲକ୍ ଆଡ଼େ ଗଲାପରେ ଗାଁ ସାରା ଗୋଟେ ଗୁଞ୍ଜରଣ ଖେଳିଗଲା "ରେଡ଼ିଓ ଆସୁଛି ।" ରେଡ଼ିଓ ଆସିବା ଖବର ପ୍ରଚାର ହେଲା ମାତ୍ରକେ ଗାଁଗଣ୍ଡାର ପିଲାମାଇପେ ସମସ୍ତେ ଗାଁମୁଣ୍ଡ ପାଖ ଠାକୁରାଣୀଙ୍କ ବରଗଛ ପାଖେ ରୁଣ୍ଡ ହୋଇଥିଲେ । ହେଇ ଆସିଲା,

ନଈବନ୍ଧରୁ ଓହ୍ଲାଇଲେଣି, ଏମିତ କେତେଥର ତ୍ରୁଟିର ହେଲପରେ ପ୍ରାୟ ଦନ ରତରତ ବେଳକୁ ନିଧି ମକଦ୍ଦମେ ପାଣୁଆ ଖେଇକୁ ହାତରେ ଧରି ନଈବନ୍ଧରୁ ଝିପି ଗାଁଆଡ଼େ ମୁହାଁଇଲେ । ଝଣ୍ଡେ ଦୂରରୁ ମକଦ୍ଦମଙ୍କୁ ଦେଖିଲାପରେ, ଚମ୍ପିକାତ ଆବାଲବୃଦ୍ଧବନିତା ଏକସ୍ୱରରେ ପାଟି କରିଉଠିଲେ, "ଆସିଗଲାରେ ରେଡ଼ିଓ ।" ଠାକୁରାଣୀଙ୍କ ଚକଡ଼ା ପାଖରୁ ଗାଁ ମଝି ଭାଗବତଘର ପର୍ଯ୍ୟନ୍ତ ପାଣୁଆ ଖେଇର କାନ୍ଧରେ ଥିବା "ରେଡ଼ିଓ"କୁ ଗୋଟେ ବିରାଟ ପ୍ରସେସନ୍‌ରେ ଅଣାଗଲା । ଗାଁର ବଡ଼ ମକଦ୍ଦମଙ୍କ ବଡ଼ଝିଅ ବାହା ହେଲାବେଳେ ଏତେ ସଂଖ୍ୟାରେ ନରନାରୀ ଦେଖଣାହାରି ପ୍ରସେସନ୍‌ରେ ଯୋଗଦେଇ ନଥିଲେ ବୋଲି ବୁଢ଼ାବୁଢ଼ୀମାନେ କୁହାକୋହି ହେଲେ ।

ଗାଁ ମଝି ଭାଗବତ ଘର ଦାଣ୍ଡରେ କାନ୍ଧରୁ ରେଡ଼ିଓ ଭାର ଓହ୍ଲାଇ ଦେଲାପରେ ପିଲାଛୁଆ ସମସ୍ତେ ଘେରି ଠିଆହେଲେ । ନିଧି ମକଦ୍ଦମେ ଅତ୍ୟନ୍ତ ଗମ୍ଭୀର ଭାବ ପ୍ରକାଶକରି ଠାକୁରଘର ଚଉପାଢ଼ି ଉପରେ ବସିପଡ଼ି ନିଜ ପାଟଲା ଗାମୁଛାରେ ମୁହଁ ଉପରୁ ଝାଳ ପୋଛିନେଇ ପବନ କରିବାରେ ଲାଗିଲେ । ଚମ୍ପିକାତ ଜନତା ଥୋକେ ରେଡ଼ିଓ ଆଡ଼େ ଚାହିଁଲେ ତ ଥୋକେ ମକଦ୍ଦମଙ୍କ ମୁହଁଆଡ଼େ ଚାହୁଁଥାନ୍ତି । ମକଦ୍ଦମେ କାହାକୁ କିଛି କହୁନଥାନ୍ତି । କିଛି ସମୟ ନୀରବତା ପରେ ନିଧି ମକଦ୍ଦମେ ଗୁରୁଗମ୍ଭୀର ସ୍ୱରରେ କହିଉଠିଲେ, "ଏଇଟାକୁ ଘେରିକରି ଠିଆହେଲେ କ'ଣଟେ ହେବ, ଯାଅ ଗୋଟେ ଲମ୍ବା ବାଉଁଶ ଆଣ ।" ପ୍ରଥମେ ଠିଆ ହୋଇଥିବା ଲୋକେ କିଛି ବୁଝିପାରିଲେନି । ମକଦ୍ଦମେ ପୁଣି ଗର୍ଜନ କରି କହିଲେ, ସବୁଠାରୁ ବଡ଼ ଗୋଟେ ଲମ୍ବାବାଉଁଶ ଆଣିଲେ, ତା' ଦେହରେ ରେଡ଼ିଓ ତାର ଗୁଡ଼ିଆ ହୋଇ ଉପରକୁ ଟେକା ହେବ । ସେ ତାର (ଏରିୟଲ୍) ବାଉଁଶ ଅଗରେ ବନ୍ଧା ହେଲେ ରେଡ଼ିଓ ଲାଗିବ । କଥାଟା ବୁଝିଲା ପରେ ଘୁରିଆ, ଧଡ଼ିଆ ଗୋଟେ ଗୋଟେ କଟୁରି ଧରି ଗାଁମୁଣ୍ଡ ମଶାଣି ପାଖ ତୋଟାଆଡ଼େ ଦଉଡ଼ିଲେ । ଅଳ୍ପ ସମୟ ଭିତରେ ନଟ ଘଆଡ଼ଙ୍କ ବାଉଁଶ ବୁଦାରୁ ଘରଣିହାଘଆ ଗୋଟେ ପାକେଳା ସୁନ୍ଦରିଆ ବାଉଁଶ ହାଣିନେଇ ଠାକୁର ଦାଣ୍ଡକୁ ବୋହିଆଣିଲେ । ବାଉଁଶରୁ ଗଣ୍ଠି ମରା ହେଲା । ଅଝିପିଚୁଲାକେ ଦୁଇଜଣ ଘନଫୁଟ ଗଭୀରର ଗୋଟେ ଗାତ ଖୋଳି ଦେଲେ ।

ବାଉଁଶରୁ ଗଣ୍ଠି ମରା ସରିଲା ପରେ ନିଧି ମକଦ୍ଦମେ ଚଉପାଢ଼ି ଉପରୁ ଉଠି ତାଙ୍କ ନାଲିଗାମୁଛାଟିକୁ ଅଣ୍ଟାରେ ଭିଡ଼ି କାଗଜପେଟିରେ ଗୁଡ଼ିଆହୋଇ ଆସିଥିବା ରେଡ଼ିଓ (ପୁରୁଣାକାଳିଆ ବାକ୍ସ, ଫନେଲ୍, ବ୍ୟାଟେରୀ) ବାକ୍ସ ଖୋଲିବା ପାଇଁ ଆଗେଇଲେ । ପାଖକୁ ଲାଗିଆସିଥିବା ଲୋକଗୁଡ଼ାଙ୍କୁ ଗାମୁଛା ହଲେଇ ଦୂରେଇଯିବାକୁ ନିର୍ଦ୍ଦେଶ ଦେଲେ । ହାପୁଆକେଳା ସାପପେଡ଼ିକୁ ଖୋଲିଲା

ପୂର୍ବରୁ ଯେପରି ପାଟିକରି ଉଠେ "ବାହ୍ୱା...ବାହ୍ୱା · ନାଗବଟ୍ଟୁ...ଅରେ, କଂସର ଘରଣୀ ପଦ୍ମାବତୀ ରାଣୀ...ଦେଖ ତୋର ବେଙ୍ଗଖିଆ ପାଟି।"

ନିଧି ମକଦ୍ଦମେ ସାପୁଆକେଳା ମାଙ୍ଗିକେ କାଗଜପେଟି ଅତ୍ୟନ୍ତ ସତର୍କତାର ସହିତ ଖୋଲି ଏରିଆଲ ତାରକୁ ବାହାର କରି ଲମ୍ବାବାଉଁଶ ମୁଣ୍ଡରେ ବାନ୍ଧି ବାଉଁଶ ଉପରକୁ ଉଠାଇଲେ । ବାଉଁଶ ଉପରକୁ ଉଠିବା ସଙ୍ଗେ ସଙ୍ଗେ ଉପସ୍ଥିତ ଲୋକମାନଙ୍କର ଆଖି ମଧ୍ୟ ଏକସାଙ୍ଗରେ ଆକାଶ ଆଡ଼କୁ ଉଠିଲା । ସମସ୍ତେ ଅପେକ୍ଷା କରିଥାନ୍ତି. କେତେବେଳେ ରେଡ଼ିଓ ବାଜିଉଠିବ । ବାଉଁଶ ପୋତା ହେଲାପରେ, ନିଧି ମକଦ୍ଦମେ ବ୍ୟାଟେରୀ ଚେକ୍‌ଅପ୍ କରି ରେଡ଼ିଓ ଖୋଲିବାକୁ ପ୍ରସ୍ତୁତ ହେଲେ । ମକଦ୍ଦମଙ୍କ ନିର୍ଦ୍ଦେଶରେ ସମସ୍ତେ ପାଖେଇ ଗଲେ । ଦାଣ୍ଡଧୂଳିରେ ପଞ୍ଝେ ବସି-ଯାଇଥାନ୍ତି । ଚଉପାଢ଼ି ଭରପୂର । ସେଇ ଉତ୍କଣ୍ଠା, କେତେବେଳେ ରେଡ଼ିଓ ବାଜିଉଠିବ । ଶ୍ରୀହରିକୋଟାରୁ ରକେଟ୍ ଲଞ୍ଚ୍ କରିବା ପୂର୍ବମୁହୂର୍ତ୍ତରେ ଯେପରି ଆଣବିକ ବୈଜ୍ଞାନିକମାନେ ଶେଷମୁହୂର୍ତ୍ତ ଚେକ୍‌ଅପ୍ କରିନିଅନ୍ତି, ନିଧି ମକଦ୍ଦମେ ରେଡ଼ିଓ ସୁଇଚ୍ ଅପ୍ କରିବା ପୂର୍ବରୁ ସବୁ ଥରେ ଥରେ ଚେକ୍‌ଅପ୍ କରିନେଇ ସୁଇଚ୍ ଅପ୍ କଲେ । ହଠାତ୍ ରେଡ଼ିଓ ଭିତରୁ ଘଁ ଘଁ ଶବ୍ଦ ଗାଁଦାଣ୍ଡ କମ୍ପାଇଦେଲା । ପାଖ ପିଣ୍ଡାରେ, ଚଉପାଢ଼ି ଉପରେ ଯେଉଁମାନେ ବସିଥିଲେ ହଠାତ୍ ଘଁ ଘଁ ଶବ୍ଦ ଶୁଣି ସେମାନଙ୍କ ମଧ୍ୟରୁ ଥୋକେ ତିଆଁ ମାରି ପାରି । ରକେଟ୍‌ଟା ଆକାଶ ବକ୍ଷକୁ ଉଠିଲା ପୂର୍ବରୁ ସମୁଦ୍ର ଗର୍ଭରେ ଖସିପଡ଼ିଲେ, ଆଣବିକ ବୈଜ୍ଞାନିକ ମୁହଁରେ ଯେଉଁ ଭାବ ପ୍ରସ୍ଫୁଟିତ ହୋଇଉଠେ, ଠିକ୍ ସେଇ ଭାବ ନିଧି ମକଦ୍ଦମଙ୍କ ମୁହଁରେ ଫୁଟିଉଠିଲା । ଲୋକମାନେ ଭୟରେ କିଛି କହୁନଥାନ୍ତି । ନିଧି ଲୋକମାନଙ୍କୁ ଦେଖାଇବା ନିମନ୍ତେ ରେଡ଼ିଓ ସୁଇଚ୍‌କୁ କିଛି ସମୟ ପାଇଁ ମୋଡ଼ାମୋଡ଼ି କଲେ, ମାତ୍ର ସେଇ ଏକଟାଳି ଘଁ ଘଁ ଶବ୍ଦ । କିଛି ସମୟ ଚେଷ୍ଟା କଲାପରେ ନିଧି ମକଦ୍ଦମେ ସମସ୍ତଙ୍କୁ ସାନ୍ତ୍ୱନା ଦେଇ କହିଲେ ଯେ "ବୁଝିଲ, ବିଜ୍ଞାନ କଥା ତ, କେଉଁଠି ଟିକିଏ ପ୍ରୋବ୍ଲେମ୍ ହୋଇଗଲେ ଗଲା । ହଉ କାଲି ସକାଳୁ ବୁଝିବା ।" ଗାଁଲୋକମାନେ ନିରାଶ ହୋଇ ଫେରିଲେ । ଭାଗବତ ଘରେ ରେଡ଼ିଓ ଥୁଆହେଲା । ଯୁବକସଙ୍ଘର ପିଲାମାନେ ରାତିରେ ଜଗିରହିଲେ । ତା'ପରଦିନ ସକାଳୁ ସକାଳୁ ମକଦ୍ଦମେ, କେହି ଉଠିବା ପୂର୍ବରୁ ଗାଁ ଛାଡ଼ି ଦେଇଥାନ୍ତି । ବି. ଡି. ଓ. ସକାଳ ଚା' ପିଇଲାବେଳକୁ ଦାସେ ତାଙ୍କ ପାଖେ ହାଜର । ତାଙ୍କର କଂପ୍ଲେନ୍ ହେଲା ବି. ଡି. ଓ. ସାହେବ ଯେଉଁପରି ଭାବେ ରେଡ଼ିଓ ଖୋଲିବାକୁ କହିଥିଲେ, ସେ ସେଇପରିଭାବେ ଖୋଲିଲେ ମାତ୍ର କିଛି ହେଲାନି; ଖାଲି ଘଁ ଘଁ ଶବ୍ଦ । ବି.ଡି.ଓ. ମହାଶୟ ସବୁକଥା ବୁଝିଲାପରେ, ଦାସଙ୍କୁ କହିଲେ ଯେ ରେଡ଼ିଓ ଗୋଟେ ଟାଇମ୍‌ରେ ବାଜେ । ସେଇ ଟାଇମ୍ ବାହାରେ ଖୋଲିଲେ ଖାଲି ଘଁ ଘଁ ଶବ୍ଦ ହେବ । ସେ ତାଙ୍କୁ ଆକାଶବାଣୀର ସମୟ ଓ କାର୍ଯ୍ୟସୂଚୀ ଲେଖିଦେଲେ ।

ସେଦିନ ସନ୍ଧ୍ୟାବେଳକୁ ପୁଣି ସମସ୍ତେ ଆସି ଭାଗବତ ଘର ପାଖେ ଭୁଣ୍ଡ ହେଲେ । ବଡ଼ ମକଦ୍ଦମଙ୍କ କାନ୍ଥଘଣ୍ଟାକୁ ଆଣି ଠାକୁରଙ୍କ ପିଣ୍ଡାରେ ରଖା ଯାଇଥିଲା । ନଧି ମକଦ୍ଦମେ ଟାଇମ ଦେଖୁଥାନ୍ତି । ସନ୍ଧ୍ୟା ଛଅଟା ତିରିଶ ପାସ୍ କଲା । ପାଞ୍ଚମିନଟ୍ ଗଲା । ନଧି ମକଦ୍ଦମେ ରେଡ଼ିଓ ସୁଇଚ୍ ଅନ୍ କଲେ “ଟକାଡ଼ୋଲା କମ୍ପା ଡକା···କମ୍ପା ଡକା ନଶୁଣ···” ରେଡ଼ିଓରୁ ସ୍ପଷ୍ଟ ହେ । ଜନତା ମନରେ ଏକ ଆନନ୍ଦର ଲହରୀ ଖେଳିଗଲା । ଗୋଟିଏ ମିନଟ୍ ମଧ୍ୟରେ ଯେ ଯେଉଁଠି ଠିଆ ହୋଇଥିଲେ ସମସ୍ତେ ଦାଣ୍ଡ ଧୂଳିରେ ବସିପଡ଼ିଲେ । ରେଡ଼ିଓ ବାଜିବା ଦେଖି ନଧି ମକଦ୍ଦମେ ଗମ୍ଭୀର ହୋଇ ଚକାପକାଇ ଚଉପାଢ଼ି ମଝିରେ ବସିପଡ଼ିଲେ । ସତେ ଯେପରି ସେ ନିଜେ ଏଇ ରେଡ଼ିଓର ଉଦ୍ଭାବକ । ଗୋଟିକ ପରେ ଗୋଟିଏ ଭଜନ ଶୁଣାଗଲା । ଭୋଇସାହିର ଦନେଇ ଭୋଇ ଆଗ ଲୋକମାନଙ୍କୁ ଠେଲିପେଲି ରେଡିଓ ବାକ୍ସଠାରୁ ଖଣ୍ଡେ ଦୂରରେ ଠିଆହୋଇ ଏକ ଲୟରେ ସେଇଆଡ଼େ ଚାହିଁଥାଏ । କିଛି ସମୟ ନିରେଖି ଚାହିଁଲା ପରେ ହଠାତ୍ କିଛି ପାଇଲା ପରି ସେ ପାଟିକରି ଉଠିଲା, “ଆହେ ନଧି ମକଦ୍ଦମେ—ସେ ବାକ୍ସଟା ଭିତରେ ଗୋଟେ ବାମନ ମଣିଷ ଅଛି ହୋ । ସେଇ ଏ ଗୀତଗୁଡ଼ାକ ବୋଲୁଛି ।” ଦନେଇ ଭୋଇର ଗଭୀର ଅନୁଧ୍ୟାନ ଆଉ ନିରୀକ୍ଷଣ ପରେ ଏପରି ଏକ ଚମକପ୍ରଦ ମନ୍ତବ୍ୟ ସମସ୍ତଙ୍କୁ ଚମକାଇ ଦେଲା । ଠିଆ ହୋଇଥିବା ପିଲାମାନେ ବାକ୍ସ ଆଡ଼କୁ ମାଡ଼ିଆସିଲେ । ନଧି ମକଦ୍ଦମେ ଗୋଟେ ବାମନ ମଣିଷକୁ ଆଣି ରେଡ଼ିଓ କରି ବଜାଉଛନ୍ତି । ସେଦିନ ଲୋକମାନଙ୍କୁ ବୁଝାଇବାକୁ ନଧି ମକଦ୍ଦମଙ୍କୁ କିଛି ସମୟ ଲାଗିଲା । ଏବେ ବି ସେକଥା ଜୀବନ୍ତଭାବେ ମୋ ଆଖିଆଗରେ ନାଚିଯାଏ ।

ଲୁଗା ବଦଲାଇ ଡ୍ରାଇନିଙ୍ଗ୍ ରୁମ୍‌ରେ ପହଞ୍ଚିଲା ବେଳକୁ ପ୍ରଭାମୟୀ ଗୋଟେ କପ ଚା’ କିଛି ବିସ୍କୁଟ୍ ଟେବୁଲ ଉପରେ ଥୋଇଦେଇ ଟି. ଭି. ସିରିୟାଲ ଦେଖିବାରେ ବ୍ୟସ୍ତ । ସେମାନଙ୍କୁ ଡିସ୍ଟର୍ବ ନକରି ମୁଁ ଚା’ ପିଆଲାରେ ମୁହଁ ଦେଲି । ଚା’ ପିଇଲା ବେଳେ, ନିକଟରେ ପ୍ରକାଶ ପାଇଥିବା ସମ୍ବାଦକଥା ମନେପଡ଼ିଲା । ଏବେ କୁଆଡ଼େ ଜାପାନ ଦେଶର ଡାକ୍ତରଖାନାମାନଙ୍କରେ ରୋଗୀଙ୍କ ସେବାଶୁଶ୍ରୂଷା ଲାଗି ନର୍ସ ନରଖି “ରୋବଟ୍-ନର୍ସ” ରଖିଲେଣି । ଏହି ଯାନ୍ତ୍ରିକ ସେବିକାମାନେ ରୋଗୀମାନଙ୍କ ସେବାକୁ ନିଖୁଣଭାବେ, ଠିକ୍ ଟାଇମ୍ ମୁତାବକ ଏବଂ ରୋଗୀମାନଙ୍କ ମନନେଇ କରିପାରୁଛନ୍ତି । ଇଞ୍ଜେକ୍‌ସନ ଦେବାଠାରୁ, ରୋଗୀମାନଙ୍କୁ ଔଷଧ, ଖାଦ୍ୟ ଖୁଆଇଦବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ସୁଚାରୁରୂପେ କାର୍ଯ୍ୟକାରୀ ହୋଇପାରୁଛି । ସେଇ ଖବର ମନେପଡ଼ିଲା ପରେ ମୋ ମନରେ ଭାବନା ହେଲା, ଯଦି ପ୍ରଭାମୟୀଙ୍କ ସ୍ଥାନରେ ଗୋଟିଏ ରୋବଟ୍-ସ୍ତ୍ରୀ ଯୋଗାଡ଼ କରିହୁଅନ୍ତା । ତାହେଲେ

ଏ ଯୌବନର ଶେଷସମୟ ଆହୁରି ସ୍ୱାଦମୟ ହୋଇଉଠନ୍ତା । ଆଉ ଏଇ ଜୀବନ୍ତ ଘରଣୀମାନଙ୍କ ନିର୍ଯାତନାରୁ ମଧ୍ୟ ରକ୍ଷା ମିଳନ୍ତା ।

ଯାନ୍ତ୍ରିକ ଘରଣୀମାନଙ୍କୁ ନିଜ ଇଚ୍ଛାନୁସାରେ ଗଢ଼େଇ, ସଜେଇ ତାଙ୍କ ମୁଣ୍ଡରେ କମ୍ପ୍ୟୁଟର କ୍ୟାସେଟ ଖଞ୍ଜିଦେଲେ ବେଶ୍ ତୁମ ନିଜ ରୁଚି ଅନୁସାରେ ସେମାନେ କାର୍ଯ୍ୟ କରିଚାଲିବେ । ଏଇ ଘରଣୀମାନେ ବିନାଦ୍ୱିଧାରେ, ବିନା ପ୍ରତିବାଦରେ ହସହସ ମୁହଁରେ ସବୁକଥା କରିଯିବେ । ଅବଶ୍ୟ ଏମାନଙ୍କୁ ଆମେ "ମୌନାବତୀ" ଆଖ୍ୟା ଦେଇପାରିବା । ମୌନ ରହି ସବୁକଥା କରିଯାଉଥିବେ । ଚୁହ୍ନନ୍ତୁ, କ୍ଷତି କ'ଣ ହେଲା ? ଅଫିସ ଫେରି ଘରକୁ ଆସିଲାବେଳେ ପାଟି ନଥିବ କି ତୁଣ୍ଡ ନଥିବ, କମ୍ପ୍ୟୁଟର ନିର୍ଦ୍ଦେଶ ମୁତାବକ ଯାନ୍ତ୍ରିକ ଘରଣୀ ଠିକ୍ ଅଫିସ ଫେରିବା ସମୟକୁ ବାହାର ବାରଣ୍ଡାରେ ହସହସ ମୁହଁରେ ଅପେକ୍ଷା କରିଥିବେ । ଆସୁଆସୁ ଚା' ଜଳଖିଆ ସବୁ ନିର୍ଭୁଲ ଭାବେ ଯୋଗାଇଦେବେ । ମନେ ମନେ ଭାବୁଥିଲି, ଚିର-ଯୌବନା ଏଇ ମୌନାବତୀ କନ୍ୟାମାନେ ସଦା ଗର୍ଜନଶୀଳା ପ୍ରଭାମୟୀଙ୍କଠାରୁ ସତେ କେତେ ଗୁଣରେ ଭଲ ନହୋଇଥିବେ ? ଅବଶ୍ୟ ଏଇ ମୌନାବତୀ କନ୍ୟାମାନେ (ଘରଣୀ) ମାତୃତ୍ୱଲାଭ କରିପାରିବେ ନାହିଁ । ମାତ୍ର ପିତୃତ୍ୱଲାଭ କରିବାରେ ବିଶେଷ ଅସୁବିଧାର ସମ୍ମୁଖୀନ ହେବାର ସମ୍ଭାବନା ମଧ୍ୟ ଦୂରେଇ ଗଲେଣି । ସାରା ବିଶ୍ୱରେ ବର୍ତ୍ତମାନ "ଟେଷ୍ଟଟିଉବ୍ ବେବି"ମାନେ ଯେପରି ଭାବେ ଜନ୍ମଗ୍ରହଣ କଲେଣି, ଆଉ କିଛି ବର୍ଷ ପରେ "ବରଦ ଅନୁଯାୟୀ" ଶିଶୁସନ୍ତାନ ମିଳିପାରିବେ । ଯାନ୍ତ୍ରିକ ସ୍ତ୍ରୀ (ମୌନାବତୀ) ମାନେ ଶିଶୁସନ୍ତାନର ଲାଳନପାଳନ ଭାର ମଧ୍ୟ ସୁଚାରୁରୂପେ କରିପାରିବେ । ସେମାନଙ୍କ କଥା ମନେପଡ଼ିଲା ବେଳେ ଜୀବନ୍ତ ଘରଣୀଙ୍କ ବିରୁଦ୍ଧରେ ମୋ ମନଟା ତାତି ଉଠିଲା । ଯଦି ଏଇ ଯାନ୍ତ୍ରିକ ଘରଣୀମାନଙ୍କ କିଣାବିକା ପାଇଁ ଗୋଟେ ବିଜ୍ଞାପନ ବାହାରନ୍ତା ତା'ହେଲେ ଏବର ଜୀବନ୍ତ ଘରଣୀମାନେ, ଓମ୍ୟାନ୍ସ୍ ଲିବ୍ ଫିବ୍ ଛାଡ଼ି ସ୍ୱାମୀସର୍ବସ୍ୱ ହେବା ଆଡ଼େ ମନ ବଳାନ୍ତେ । ବିଦ୍ରୋହୀ ମନଟା କହିଉଠିଲା, 'ନା, ଏହାପାଇଁ ଗୋଟେ କିଛି କରିବାକୁ ପଡ଼ିବ । ଯାନ୍ତ୍ରିକ ଘରଣୀମାନଙ୍କ ସପକ୍ଷରେ ଜନମତ ସୃଷ୍ଟି କରିବା ନିହାତି ଆବଶ୍ୟକ । ଆମ ଦେଶରେ ଜନଚେତନାର ଅଭାବ ଯୋଗୁଁ ସମାଜରେ ଅଭୂତପୂର୍ବ କ୍ଷତି ଘଟୁଛି, ମାତ୍ର କେହି ସେ ବିଷୟରେ ମୁଣ୍ଡ ପୂରାଉ ନାହାନ୍ତି । ଚେତନା ସୃଷ୍ଟି କରିବା ଦିଗରେ ସଚେତନ ହେଉନାହାନ୍ତି । ଚେତନା ଆଉ ଜନମତ ଇତ୍ୟାଦି ମୋ ମୁଣ୍ଡ ମଧ୍ୟରେ ଖୁବ୍ ଜୋର୍‌ରେ ଝଡ଼ ସୃଷ୍ଟି କଲାବେଳେ ମୋ ମୁଷ୍ଟିବଦ୍ଧ ଡାହାଣ ହାତଟା ହଠାତ୍ ଡାଇନିଙ୍ଗ୍ ଟେବୁଲ ଉପରେ ଆଘାତ ଦେଲା ଏବଂ ସେଇ ଆଘାତରେ ଅଳ୍ପଦିନ ପୂର୍ବରୁ ମାଷ୍ଟରକ୍ୟାଣ୍ଟିନ୍ ସୋ-ରୁମ୍‌ରୁ ପ୍ରଭାମୟୀ ଆଣିଥିବା ସୁନ୍ଦର କପ୍‌ପ୍ଲେଟ୍ ଟେବୁଲ ଉପରୁ ଡେଇଁ ଝପ୍‌ଝାପ୍ ତଳେ

ପଡ଼ି ଚୂର୍‌ମାର୍ ହୋଇଗଲା । କପ୍‌ପ୍ଲେଟ୍ ଚଟାଣ ଉପରେ ଠଣ୍‌ଠାଣ୍ ଭଙ୍ଗୀର ସୁନ୍ଦର ନାଦ ମୋ କାନ ଭିତରେ ପଶି ମୁଣ୍ଡ ଭିତରେ ପ୍ରତିଧ୍ୱନି ପ୍ରକାଶ କରିବା ପୂର୍ବରୁ ପ୍ରଭାମୟୀ ଡ୍ରଇଙ୍ଗ୍‌ରୁମ୍‌ରୁ ଗର୍ଜନ କରି କହିଉଠିଲେ, "ମାସେ ହୋଇନି, କପ୍ ପ୍ଲେଟ୍ ସେଟ୍‌ଟା ମାଷ୍ଟର୍‌କ୍ୟାଣ୍ଟିନ୍‌ରୁ ଆଣିଥିଲି, ପୂରା ପଇସା ଏପର୍ଯ୍ୟନ୍ତ ଦିଆ ହୋଇନି—ଭାଙ୍ଗି ଶେଷ କରିଦେଲ ।" କଥା କହି କହି ପ୍ରଭାମୟୀ ଡ୍ରଇଙ୍ଗ୍‌ରୁମ୍‌ରୁ ଡାଇନିଂ ରୁମ୍‌ଆଡ଼େ ମାଡ଼ିଆସିଲେ । ସେତେବେଳକୁ ମୋ' ମାନସପଟରୁ ମୈନାବତୀର ହସହସ ମୁହଁ ଲିଭି ଲିଭି ଯାଉଥିଲା ଆଉ ଆଖିଆଗରେ ଗର୍ଜନଶୀଳା ପ୍ରଭାମୟୀଙ୍କ ବାଘୁଣୀ ମୁହଁଟା ଉଙ୍କି ମାରିବାରେ ଲାଗିଲା । ବେଶୀ ସମୟ ସେ ମୁହଁକୁ ନ ଚାହିଁ ମୁଁ ମୁହଁ ଅବନତ କରି, ଭାଙ୍ଗି ଯାଇଥିବା ଟୁକୁରା ଟୁକୁରା କପ୍ ପ୍ଲେଟ୍ ଆଡ଼େ ଲକ୍ଷ୍ୟକରି ପୂର୍ବାପର କଥା ଭାବୁଥିଲି । ସେତେବେଳେ ଗର୍ଜନଶୀଳା ଜୀବନ୍ତ ଘରଣୀ କିମ୍ବା ଚିରଯୌବନା ହସହସ ମୁହାଁ ମୈନାବତୀ ଯାନ୍ତ୍ରିକ ଘରଣୀ କାହା କଥା ମନେପଡ଼ୁନଥିଲା ।



# ବନ୍ଦୀକରଣ

ସକାଳୁ ସକାଳୁ ପ୍ରଭାମୟୀଙ୍କ ଗର୍ଜନ ତଳଘରୁ ଶୁଣି ଆମ୍ଭେ ଶଯ୍ୟାତ୍ୟାଗପୂର୍ବକ ମଙ୍ଗଳାଷ୍ଟକ ଜପକରି, ଦିବାର ଆରମ୍ଭ ପୂର୍ବରୁ ଅନ୍ୟ ମୁଖ ଦର୍ଶନ କରିବା ଶ୍ରେୟ ମନେ ନକରି ସନ୍ନିକଟ ସ୍ନାନାଗାରରେ ପ୍ରବେଶନ୍ତେ ଲକ୍ଷ୍ମଣ ମିଶ୍ରଙ୍କ "ବୃହତ୍ ଗୃହ-ଚିକିତ୍ସା ବିଜ୍ଞାନ" ବର୍ଣ୍ଣିତ ଉପଦେଶାନୁସାରେ ଗଣିଗଣି ଅଠେଇଶ ଥର ପାଣିଅଞ୍ଜୁଳା ଆଖି ଉପରକୁ ଛାଟି, ଅସଜ୍ଜିତ କେଶରାଶିକୁ ଟିକିଏ ପାନିଆ ମାରି ସଜାଡ଼ିଦେଇ, ସନ୍ତର୍ପ ଅଥଚ ମନ୍ଥର ପଦଚାଳନାରେ ତଳଘରକୁ ଲମ୍ବିଯାଇଥିବା ଶିଡ଼ିର ସାହାଯ୍ୟ ନେଇ ଅବତରଣ କଲୁ । ଆମ୍ଭର ଅତ୍ୟନ୍ତ ସନ୍ତର୍ପିତ ପଦଚାଳନା ପ୍ରଭାମୟୀଙ୍କ କର୍ଣ୍ଣଗୋଚର ହୋଇଗଲା । ଆଉ ମାତ୍ର ପାଞ୍ଚଟା ପାହାଚ ଡେଇଁ ଯାଇଥିଲେ ଆମ୍ଭେ ତଳଗୃହର ଡ୍ରଇଂ-କମ୍-ଡାଇନିଂରୁମ୍‌ରେ ପଦାର୍ପଣ କରିଥାନ୍ତୁ । ମାତ୍ର ପ୍ରଭାମୟୀଙ୍କ 'ପ୍ରଭାତ ମେଘ ଡମ୍ବରୁ' ସ୍ୱର ଏବଂ ତଜ୍ଜନିତ ଶବ୍ଦାଘାତରେ ଆମ୍ଭର ଦକ୍ଷିଣପଦ ପଞ୍ଚମ ଆଉ ଚତୁର୍ଥ ପାହାଚ ମଧ୍ୟସ୍ଥଳରେ ଅଟକିଗଲା । ଆମେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଓଡ଼ିଶୀନାଚର କୌଣସି ଏକ ଭଙ୍ଗୀରେ ଆଶ୍ରୟ ନେବାକୁ ବାଧ୍ୟହେଲୁ । ବଢ଼େଇଦେଇଥିବା ପାଦଟା ତଳକୁ ଯିବ କି ଉପରକୁ ଫେରିଆସିବ ଭାବିଲା ବେଳକୁ ପ୍ରଭାମୟୀଙ୍କର 'କ'ଣ କାନକୁ ଶୁଭୁନି ?' କର୍କଶ ସମ୍ଭାଷଣରେ ଡାହାଣ ପାଦ ସ୍ୱତଃପ୍ରବୃତ୍ତଭାବେ ଚତୁର୍ଥ ପାହାଚ ଅତିକ୍ରମ କରି ତଡ଼ିତ୍ ବେଗରେ ଡାଇନିଂହଲ୍‌ରେ ପ୍ରବେଶକରି ସେଠାରେ ଥିବା କୌଣସି ଏକ ଚେୟାର୍‌କୁ ଧରି ରହିଗଲୁ ।

ଲୋକେ କହନ୍ତି, ଗୋଟେ କିଛି ଧରିପକେଇଲେ ମନରେ ଦମ୍ଭ ଆସେ । ଯେପରି ବୁଢ଼ାଲୋକ ବାଡ଼ିଟିଏ ଧରେ । ପିଲାଟିଏ କାନ୍ଥ ଧରେ । ଝିଅମାନେ ପୁଅମାନଙ୍କ ହାତ ଧରନ୍ତି । ବୁଡ଼ିଯାଉଥିବା ଲୋକ କୁଟାଖିଅଟିଏ ଧରେ । ସେହିପରି ଭୟାକୁଳ ଲୋକ କମ୍ବା ଥଳକୂଳ ପାଉନଥିବା ଆକୁଳିଆ, ବାଉଳିଆ ଲୋକ ଗୋଟେ କିଛି ପାଇ ଧରିପକେଇଲେ, ତାଙ୍କ ଛାତିରେ ଦମ୍ଭ ଆସିଯାଏ ।

ଷ୍ଟେଜ୍ ଉପରେ ଡାଇଲଗ୍ ଭୁଲିଯାଇଥିବା ଆର୍ଟିଷ୍ଟ୍ ପାଟି ପାକୁଆକୁ କଲାବେଳେ ପ୍ରମ୍ପ୍‌ଟର ଯେମିତି ତାକୁ ଗୋଟେ ପଦ ଧରେଇଦେଲେ, ସେ ଷ୍ଟେଜ୍-ରୂପକ ସମୁଦ୍ରକୁ ଏକାଡିଆଁକେ ପାର ହୋଇଯାଏ, ଆମ୍ଭେ ସେହିପରି ପ୍ରଭାମୟୀଙ୍କ

ଶବ୍ଦାଘାତରେ ସିଧାସଳଖ ଯାଇ ଡାଇରେକ୍ଟର୍ ଧରିଲି ପରେ ମନରେ ଦମ୍ଭଧରି ପଚାରିଲି, "କ'ଣ ହେଲା ? ସକାଳୁ ସକାଳୁ..." ଆମ କଥା ଶେଷହେବା ପୂର୍ବରୁ ପ୍ରଭାମୟୀ ଝପ୍‌କିନା କଥାକୁ ମାଡ଼ିବସି କହିଲେ—"କ'ଣ, ଖବରକାଗଜ ପଢ଼ୁନ ?...ଏତେ ପଇସା ଦେଇ ଏ ଖବରକାଗଜଗୁଡ଼ାକ ଘରକୁ ଆସୁଛି କାହିଁକି ?" ଆମ୍ଭେ ଆଁ ମେଲିକରି ଘଟଣା କ'ଣ ବୁଝିବାକୁ ଇଚ୍ଛାପ୍ରକାଶ କରିବା ମାତ୍ରକେ, ପ୍ରଭାମୟୀ ଖବରକାଗଜର ପ୍ରଥମପୃଷ୍ଠାକୁ ଦେଖାଇ କହିଲେ, "ପଢ଼ ସମସ୍ତେ, ପ୍ରଧାନମନ୍ତ୍ରୀଙ୍କଠାରୁ ଆରମ୍ଭକରି ମୁଖ୍ୟମନ୍ତ୍ରୀ ପର୍ଯ୍ୟନ୍ତ, ଦିଲ୍ଲୀଠାରୁ ଭୁବନେଶ୍ୱର ସହରରେ ଗଛ ଲଗେଇ ସାରିଲେଣି, ସାମାଜିକ ବନୀକରଣ ଉପରେ ସବୁଦିନେ ଲମ୍ବା ଲମ୍ବା ଖବର ଛପାହେଉଛି, ଫଟୋ ବାହାରୁଛି; ତୁମକୁ ଆଉ ତୁମ ଯୋଗ୍ୟ ଅର୍ଡ଼ଲିକୁ ପନ୍ଦରଦିନ ହେଲା କହିଲିଣି କିଛି ଗଛ ଆଣ, ସାମାଜିକ ବଣ ସୃଷ୍ଟି କରିବା । ବର୍ତ୍ତମାନ ଗଛଚାରା ଫ୍ରିଆଡ଼େ ଯୋଗାଇ ଦିଆଯାଉଛି । ମୋ କଥା କାହା କାନରେ ପଶୁନି ।" କଥାଟା ଏପରି ଜାଣି ଆମ୍ଭେ ଆମର କାଳିଦ-ଗମ୍ଭୀର କଳାହାଣ୍ଡିଆ ବଉଦର ମୁହଁର ଫାଙ୍କରେ ଧଳାବଉଦ ଦିଶିଲା ପରି ସ୍ମିତହାସ୍ୟ ଖେଳାଇ କହିଲୁ, "ଓଃ ! ଏଇ କଥା ? ଏବେ ତ ଆମ ଅଫିସ ହତାରେ ପାଞ୍ଚଶହ ଗଛ ଲଗେଇଛୁ । ଚେୟାରମ୍ୟାନ୍ ସାହେବ ନିଜେ ଆସି ବୃକ୍ଷରୋପଣ କାର୍ଯ୍ୟରେ ଶୁଭଦେଲେ ।"

"କେତେ ଗଛ ବଞ୍ଚିଛି, କେତେ ଗଛ ଛେଳି, ଛେଳିଙ୍କ ମୁହଁରେ ପଞ୍ଚତ୍ୱପ୍ରାପ୍ତ ପାଇଛନ୍ତି, ହିସାବ ରଖିଛ ?"—ପ୍ରଭାମୟୀଙ୍କ ପ୍ରଶ୍ନ । ଅବଶ୍ୟ ବୃକ୍ଷରୋପଣ ପାଇଁ ସରକାରୀ ସର୍କୁଲର ପାଇବା ପରେ ପରେ ଅଫିସ୍‌ର ମୁଖ୍ୟ କିରାଣି ହ. ହ. ପାଲ (ହରିହର ପାଲ) କ. କ. ଧଳ (କାଳୀ କିଶୋର ଧଳ)ଙ୍କ ଜରିଆରେ ଆମଠାରୁ ଆଦେଶ ନେଇ ପାଞ୍ଚଶତ ବୃକ୍ଷଚାରା ନେଇଆସି, ଚେୟାରମ୍ୟାନ୍ ସାହେବଙ୍କୁ ଡାକି ଉଦ୍‌ଘାଟନ ଉତ୍ସବ କରାଇ, ସେଥି ବାବଦ ଜଳପାନ ଇତ୍ୟାଦି ଇତ୍ୟାଦି ବାବଦରୁ କଣ୍ଟିନ୍‌ଜେନ୍‌ସିରୁ ଅର୍ଥନେଇ ବୃକ୍ଷରୋପଣ ଉତ୍ସବ ପାଳନ କଲେ । ଗଛ ପୋତା-ହୋଇ ପରଦିନ ହ. ହ. ପାଲ ସରକାରଙ୍କୁ ରିପୋର୍ଟ ଦେଲେ ଯେ, ଆମ ଦପ୍ତରରେ ପାଞ୍ଚଶତ ବୃକ୍ଷ ଲଗାଗଲା । ପାଞ୍ଚଦିନ ପରେ ଛେଳି, ଗାଈ, ମେଷ, ଗୁଣ୍ଡଗଳଙ୍କ ମୁହଁରେ ଚାରିଶତାଧିକ ବୃକ୍ଷଚାରା ଧ୍ୱଂସ ପାଇଲା । ଯତ୍କିଞ୍ଚିତ୍ ଗୁଡ଼ାରୁ ପାଞ୍ଚଦଶଟା ଦି'ପତ୍ର ଦେଲେ ଆମ ପରିଶ୍ରମ ରହିଲା ବୋଲି ଜାଣନ୍ତୁ । ଆମକୁ ନୀରବ ରହିବା ଦେଖି ପ୍ରଭାମୟୀ ପୁଣି କହିଉଠିଲେ, ହଁ-ହେ, ମୁଁ ଜାଣେ ସରକାରୀ ଘରର କାମ । ରିପୋର୍ଟ ଦେଇଦେଲେ କାମ ଶେଷ । ଉପରୁ ଅର୍ଡ଼ର ଆସିଲା, ଅର୍ଡ଼ର ତାମିଲ ହେଲା । ରିପୋର୍ଟ ସରକାରଙ୍କ ପାଖେ ପହଞ୍ଚିଗଲେ ପାଇଟି ସରିଲା । ସରକାରଘର କାମ ଅଟାକଲ ପରି । ଉପର ମୁହଁରେ ଦିଅ, ତଳ ମୁହଁରେ ନିଅ । କେତେ ଦେଲ କ'ଣ ନେଲ—କିଏ ପଚାରେ ? ଉପରୁ ଅର୍ଡ଼ର ଆସିଲା, ତଳବାଲା ସଙ୍ଗେ

ସଙ୍ଗେ କାର୍ଯ୍ୟକାରୀ କଲେ ବୋଲି ଉତ୍ତର ଦେଇଦେଲେ କାର୍ଯ୍ୟ ଶେଷ । ସରକାରଙ୍କ ହିସାବରେ ଦଶକୋଟି ଗଛ ଲଗିଲା । ଦେଖିଲାବେଳେ ଦଶଗ୍ରାମରୁ କି ପାଞ୍ଚଗ୍ରାମ ର ଗଛ ନଥିବ ।" ପ୍ରଭାମୟୀ ଟିକିଏ ଦୃଢ଼ସ୍ୱରରେ କହିଲେ, "ମୁଁ ସରକାରୀ କଥା କହୁନି, ଘରୋଇ କଥା ମାନେ ଆମ ଘରେ କିଛି ବୃକ୍ଷରୋପଣ କଥା ।" ଆମ୍ଭେ ମନେ ମନେ ଭାବିଲୁ, ସତକଥା । ଆଜିକାଲି ଆମ ଦେଶରେ କି ପ୍ରକାର ବ୍ୟବସ୍ଥାର ପ୍ରଚଳନ ଅଛି । ଗୋଟେ ହେଲା, 'ସରକାରୀ' ଆଉ ଗୋଟେ ହେଲା 'ଘରୋଇ' । ସରକାରୀ ବସ୍—ଘରୋଇ ବସ୍, ସରକାରୀ ଉଦ୍ୟୋଗ—ଘରୋଇ ଉଦ୍ୟୋଗ ଇତ୍ୟାଦି । ଆମ୍ଭେମାନେ ସରକାରୀ ଗାଡ଼ି ଚଳେଇ ଗଲାବେଳେ ରାସ୍ତା ଉପରେ ଟିମା କି ଗାତ କିଛି ମାନୁନାହୁଁ । କିନ୍ତୁ ନିଜ ଗାଡ଼ି ଚଳେଇ ଗଲାବେଳକୁ ରାସ୍ତାକୁ ମାପିଚୁପି ଗାଡ଼ି ଚଳାଉ । ପ୍ରଭାମୟୀ ଘରୋଇ ଗୃକରଙ୍କ ଉପରେ ଦୃଷ୍ଟିପାତ କରି ଉଚ୍ଚସ୍ୱରରେ କିଛି କହିବାକୁ ଯିବା ପୂର୍ବରୁ ଆମ୍ଭେ ଆମ୍ଭ ଚିନ୍ତାଧାରାକୁ ମନ ମଧ୍ୟରେ ରଖି କହିଲୁ—"ଆମ୍ଭ ପିତୃଅର୍ଜିତ ଗ୍ରାମରେ ପଡ଼ିଆ ପଡ଼ିଥିବା ଦଶ ଏକର ଜମିରେ ନାରିକେଳ ପ୍ରଭୃତି କିଛି ବୃକ୍ଷରୋପଣ କଲେ ଭଲ ହୁଅନ୍ତା ଏବଂ ସରକାରଙ୍କର ସାମାଜିକ ବନୀକରଣ କାର୍ଯ୍ୟକ୍ରମ ବି ସଫଳ ହୁଅନ୍ତା ।" ଏତିକି କହିଲା ପରେ ଆମ୍ଭେ ଭାବିଥିଲୁ ପ୍ରଭାମୟୀ ନିଶ୍ଚୟ ଆମ୍ଭ କଥାକୁ ସପୋର୍ଟ କରି ରାଜିହେବେ । ମାତ୍ର ଆମ୍ଭର ଏପରି ସୁଚିନ୍ତିତ ପରାମର୍ଶ ଶୁଣି ସେ ସଦ୍ୟପ୍ରସ୍ତୁତ ଆମ୍ବୁଲ ଖାଇଲାପରି ମୁହଁକରି କହିଲେ, "କ'ଣ କହିଲ ? ଗାଁରେ ନାରିକେଳ ଚାଷ କରିବ ! ଲାଜ ମାଡୁନି ମୁହଁକୁ ! ବୋପା, ଅଜା କାଳରୁ ଯେଉଁ କେତେଟା ଗଛ ଥିଲା, ତା' ଦେହରୁ ତ ଦାଉରି ଟୋକାଏ ପ୍ରତ୍ୟେକ ଦିନ ସନ୍ଧ୍ୟାରେ ଗଞ୍ଜେଇ ଝିଙ୍କି ତୁଲେଇବା ପାଇଁ କିଦାପଇଡ଼ଟାଏ ରଖୁନାହାନ୍ତି ! ଏ ପୁଣି ଗାଁରେ ନାରିକେଳ ବୃକ୍ଷରୋପଣ କରିବେ ! ତୁମ ମୁଣ୍ଡରେ କ'ଣ ଅଛି କେଜାଣି ?"

ଶ୍ରାବଣ ମାସରେ ଛନଛନିଆ ଧାନ କିଆରିରେ ଲଙ୍ଗଳ ମାରିବା ପାଇଁ ବଳଦମୁହଁରେ ତୁଣ୍ଡି ବାନ୍ଧିଦେଲା ପରି ପ୍ରଭାମୟୀଙ୍କ କଥାବାଣ ଆମ୍ଭ ମୁହଁରେ ତୁଣ୍ଡି ପକାଇଦେଲା । ଗାଁରେ ନାରିକେଳ ବୃକ୍ଷରୋପଣ ପ୍ରସ୍ତାବ ଉପରେ ତାଙ୍କ ମନ୍ତବ୍ୟ ଶୁଣି ଆମ୍ଭର କେତେକାଂଶରେ ଜ୍ଞାନ ଉଦୟ ହେଲା । ସରକାରଙ୍କ ବହୁ ପ୍ରଚାରିତ ଇ. ଆର. ଆର. ପି., ଆଇ. ଆର. ଡି. ପି. ଗାଁଟା ଯାକର ବାଉରିଟୋକାଙ୍କଠାରୁ ଆରମ୍ଭ କରି ବେକାର ବ୍ରାହ୍ମଣଟୋକା ପର୍ଯ୍ୟନ୍ତ ସମସ୍ତଙ୍କୁ ଗଞ୍ଜେଇଆ, ମଦୁଆ କରିଦେଲା । ଆଇ. ଆର. ଡି. ପି. ନାଁରେ ଯେତେ ଟଙ୍କା ଗଲା, ମିଛସତ କହି ଛେଳି, ମେଣ୍ଢା, କୁକୁଡ଼ା ଚାଷ କରିବାକୁ ଟଙ୍କା ନେଲେ । ବ୍ଲକ୍‌ଠାରୁ ପଶୁଡାକ୍ତରଙ୍କ ପର୍ଯ୍ୟନ୍ତ ପାଉଣା ନେଲାପରେ ବାକିତକ ଚାଲିଲା ଗଞ୍ଜେଇ ଆଉ ମଦ ସେବନ କାର୍ଯ୍ୟରେ । କୁକୁଡ଼ା କିଣି ଫିଷ୍ଟ୍ ହେଲା ! ଛେଳିମାରି ଭୋଜି ଚାଲିଲା । ଟଙ୍କା

ସଇଲା ପରେ କାହା ବାଡ଼ିରୁ କଦଳୀ ଗଲାଣି ତ, କାହା ବିଲରୁ ଧାନ । ନଡ଼ିଆ ଗଛରେ ପଇଡ଼ଟାଏ ରହୁନ । ଗୃହପାଳିତ ଛାଗଳ କାନ୍ଧକାଟି ବଜାରରେ ବିକ୍ରୀ । ଗଞ୍ଜେଇ, ଦେଶୀମଦ ସାଙ୍ଗକୁ ଗ୍ରେଭି କୁକୁଡ଼ା, ମାଛର ଚପ୍ !  ବେଶ୍ ଗାଁ ଗହଳରେ ଆଧୁନିକ ଉନ୍ନତ ପ୍ରୋଗ୍ରାମର ଗ୍ରୁପ । ବାପ-ଅଜା କାଳରୁ ମଦ ନାଁ ଶୁଣି ନଥିଲେ । ଏବେ ସେ ଜନପଦଟି ଘରେ ଘରେ । ପୁରୁଣାକାଳିଆ ବୁଢ଼ାମାନେ ଟୋକାମାନଙ୍କୁ ଜବତ୍ କରିବାକୁ ଯାଇ ମାଡ଼ ଖାଇ, ସନ୍ଧ୍ୟା ବେଳକୁ ଘରକଣରେ ଲୁଚିଲେଣି । ଯୁଗ ବଦଳୁଛି । ସେମାନେ ବା କାହିଁକି ଏଥିରେ ହସ୍ତକ୍ଷେପ କରିବେ ? ଯୁବକ-ମାନେ ମଦ ପିଅନ୍ତୁ କି ଗଞ୍ଜେଇ ଖାଆନ୍ତୁ ।  ମନେ ମନେ ଭାବିଲି—ପ୍ରଭାମୟୀଙ୍କ ମସ୍ତିଷ୍କ ଉର୍ବର । ତାଙ୍କ ବାପ ସରକାରୀ ଚାକିରି କରି ବହୁ ଯୁଗରୁ ଗାଁ ସହିତ ସମ୍ପର୍କ ତୁଟେଇ ସାରିଲେଣି । ପ୍ରଭାମୟୀ ଗାଁକୁ କେବେ ଥରେଅଧେ ବାହା ବ୍ରତଘରକୁ ଯାଇଥିବେ । ସହରର ଉଠା ପାଇଖାନାରେ ଲମ୍ବା ଲମ୍ବା ଲାଙ୍ଗୁଡ଼ିଆ ପୋକ ଗୋଡ଼ ଉପରେ ଚଢ଼ିଗଲେ ବି ତାଙ୍କ ଝାଡ଼ା ପରିଷ୍କାର ହୁଏ । ଗାଁର ମୁକ୍ତ ଆକାଶତଳ ସବୁଜ ଦୂର୍ବାଦଳ ପଡ଼ିଆରେ ଝାଡ଼ା ହୁଏନ । ସେ କୁହନ୍ତି, ଏପରି ସ୍ଥାନରେ ମଳମୂତ୍ର ତ୍ୟାଗ କରିବା, ଅତୀବ ଅଭଦ୍ରତା—ସ୍ୱାସ୍ଥ୍ୟ ଦୃଷ୍ଟିରୁ କ୍ଷତିକାରକ । ପାଦଦେଇ ଚାକୁଣ୍ଡି ପେଟ ଭିତରକୁ ପଶି ଟେପ୍‌ୱାର୍ମ ସୃଷ୍ଟି କରିବ ।

ଗାଁର ସବୁଜ ପତ୍ରପରିବା ତାଙ୍କ ପାଟିରେ ଅରୁଚି ସୃଷ୍ଟି କରେ । ରାସ୍ତାକଡ଼ର କଟକୀ ଚପ୍ କି ବାରବାଟୀ ଷ୍ଟାଡ଼ିୟମ ଆଗ ରଘୁଆ ବେହେରାର ନାଲି ଟକଟକ ନାଲିମରିଚ ପୁଟଦିଆ ଆଳୁଦମ-ଦହିବରାକୁ ଦେଖିଲେ ତାଙ୍କ ପାଟିରୁ ଲାଳଗଡ଼େ । ଆମୋବିକ୍ ଡିସେଣ୍ଟ୍ରି ହେଉ ପଛେ ରଘୁ ବେହେରାର ଦହିବରା, ଆଳୁଦମ୍‌କୁ ଖାଇ ଦାଇଟା କେଲେସିଲ୍ ଟାବ୍‌ଲେଟ ପେଟରେ ପକାନ୍ତି । ତେଣୁ ତାଙ୍କର ଗାଁ ପ୍ରତି ଏକ ଅରୁଚି ଭାବ ଅଛି, ଏକଥା ଆମ୍ଭେ ଜାଣିଥିଲୁ । ମାତ୍ର କଥାଟା କହୁକହୁ ପାଟିରୁ ବାହାରିଗଲା । ତେବେ ତାଙ୍କ ଯୁକ୍ତିରେ ସତ୍ୟତା ଯେ ନଥିଲା, ଏକଥା ଆମ୍ଭେ କହିପାରିବୁ ନାହିଁ ।

ଆମ୍ଭକୁ ନୀରବରେ ଚା'ପାନ କରୁଥିବାର ଦେଖି ପ୍ରଭାମୟୀ ଆଦେଶ ଦେଲେ, "ଶୁଣ, ଅଫିସରୁ ଅଇଲାବେଳେ ସାମାଜିକ ବନୀକରଣ ଫାର୍ମରୁ ଭଲ ଭଲ ଚାରାଗଛ ଦେଖି ଆଣିବ, ବୁଝିଲ ?" ଆମ୍ଭେ ମୁଣ୍ଡଟୁଙ୍ଗାରି ସମ୍ମତି ଜଣାଇଲୁ । ଅଯଥା ପାଟିଫିଟେଇ ପୁଣି ଶବ୍ଦବାଣର ଶରବ୍ୟ ହେବା ଅପେକ୍ଷା ମୌନବ୍ରତ ଶ୍ରେୟସ୍କର ।

ସେଦିନ ଅଫିସ ଫେରିଲା ବାଟରେ ଫାର୍ମରୁ ଭଲ ଭଲ ଆମ୍ବ, ପିଜୁଳି, ଶାଗୁଆନ ଗଛର ଚାରା କିଛି ଧରି ଆମ୍ଭେ ଗୃହରେ ପହଞ୍ଚିଲୁ । ବଗିଚାରେ ଚାରାଗଛ

ରହିଲାପରେ ପ୍ରଭାମୟୀଙ୍କୁ ଏ ଖବରଟି ଦେଲୁ । ଆମଠାରୁ ଖବର ପାଇ ପ୍ରଭାମୟୀ ଘରେଇ ଚାକରଙ୍କ ଉଦ୍ଦେଶ୍ୟରେ କିଛି ନିର୍ଦ୍ଦେଶ ଦେଲେ । ଆମ୍ଭେ ଆମର କର୍ତ୍ତବ୍ୟ ସମ୍ପାଦନ କରିଛୁ ଜାଣି ଆତ୍ମସନ୍ତୋଷ ଲାଭକରି ଉପର ମହଲାକୁ ଯାଇ ବିଶ୍ରାମ ନେଲୁ ।

ତା'ପରଦିନ ଅଫିସରୁ ଫେରି ଘରେ ଦେଖିଲୁ, ଆମ ବଗିଚା ସାରାପଟେ କୁଣ୍ଡମୟ । ପ୍ରତ୍ୟେକ କୁଣ୍ଡରେ କେଉଁଠି ଆମ୍ବଗଛ ତ କେଉଁଠି ବର, ଓସ୍ତ, ଶାଗୁଆନ ଇତ୍ୟାଦି ଇତ୍ୟାଦି । ପ୍ରଥମେ ଆମ୍ଭେ କିଛି ବୁଝିପାରିଲୁ ନାହିଁ । ବଗିଚାରେ ଏତେ ସ୍ଥାନ ଥାଉ ଥାଉ ପ୍ରଭାମୟୀ ଏ ସମସ୍ତ ଚାରାଗଛଗୁଡ଼ିକୁ ଯତ୍ନରେ କୁଣ୍ଡ ମଧ୍ୟରେ ରୋପଣ କଲେ କାହିଁକି ? ସନ୍ଦେହ ଦୃଷ୍ଟିରେ ଆମ୍ଭେ ଚାରାବୃକ୍ଷ ଆଡ଼େ ଚାହିଁଲାବେଳକୁ ପ୍ରଭାମୟୀ ପହଞ୍ଚିଯାଇ କହିଲେ, "କ'ଣ ଦେଖୁଛ ? ଭଲ ହୋଇଛି କି ନାହିଁ ?" କିଛି ନବୁଝିପାରିଲେ ଅଖିରେ ତାଙ୍କ ଆଡ଼େ ମୁହଁ ଟେକିଲା ମାତ୍ରେ ସେ କହିଲେ, ବନ୍‌ସାଇ...ବନ୍‌ସାଇ । ଟି. ଭି. ପ୍ରୋଗ୍ରାମ ତ ଦେଖିବନି । ଆଠ ବାଜୁ ନବାଜୁଣୁ ଶୋଇ ପଡ଼ିବ । ଏ ସବୁ ଚାରାର 'ବନ୍‌ସାଇ' କରାହୋଇଛି ।

ବର, ଆମ୍ବ, ପଣସ, ଶାଳଗଛର 'ବନ୍‌ସାଇ' । ପ୍ରଭାମୟୀଙ୍କଠାରୁ ଶୁଣି ଶୁଣି ଆମ୍ଭେ କହିଲୁ, 'ଓଃ ବନ୍‌ସାଇ !...ଆଚ୍ଛା ଆଚ୍ଛା—ଖୁବ୍ ସୁନ୍ଦର ହୋଇଛି ।'

କିଛିଦିନ ପରେ ଆମର ଅଶୀବର୍ଷୀୟା ବୟସ୍କା ମାତୃଦେବୀ ପୁରୀରୁ କାର୍ତ୍ତିକ ବ୍ରତ ପାଳନ କରି ଆମ ସହରସ୍ଥିତ ବାସଗୃହ ଦେଇ ଗ୍ରାମକୁ ଫେରିବା ନିମିତ୍ତ କିଛିଦିନ ଅବସ୍ଥାନ କରିବା ପାଇଁ ଆସିଲେ ।

ଅଶୀବର୍ଷ ହେଲେ କ'ଣ ହେଲା, ଆଖିକୁ ନିର୍ମଳ ଦିଶେ । ଦିନେ ଉପର-ବେଳା ବଗିଚା ବୁଲି ଦେଖିଲାବେଳେ ସେ ମୋତେ କହିଲେ, "କିରେ ବାପା ! ଏ ଆମ୍ବ, ପଣସ, ବର, ଓସ୍ତଗଛ କ'ଣ କୁଣ୍ଡରେ ପକାଇଛି ?" ମୁଁ କହିଲି, "ବୋଉ, ଏ ସବୁ ଗଛ ତୁମର ପୁତ୍ରବଧୂ ବନ୍‌ସାଇ କରିଛନ୍ତି । ବର୍ଷ ବର୍ଷ ଧରି ଏ ଗଛ ଏଇ କୁଣ୍ଡରେ ରହିବ । ଫୁଲ ଫୁଟିବ, କଢ଼ ଧରିବ, ଫଳ ଫଳିବ ।" ବୁଢ଼ୀ ମୋ ଠାରୁ ଏତିକି ଶୁଣି କହିଲେ, 'ହଁରେ ପୁଅ ! ବଡ଼ରୁ ତ କମୁ ସରିଲେ, ଏବେ ନନ୍ଦନକାନନର ଚିଡ଼ିଆଖାନାରେ ଦେଖୁଛି । ଶାଳ, ପିଆଶାଳ, ଶାଗୁଆନ ଜଙ୍ଗଲ କାଟି ସଫାକଲ । ଗାଁ-ଗଣ୍ଡାରୁ ଆମ୍ବ, ପଣସ, ବରଗଛର ତୋଟା ଗଲା । ସରକାର ଏବେ ଇଉକାଲିପଟାସ, ବାରମାସୀ ଗଛ ଲଗାଇ ବଣ କରୁଛନ୍ତି । ତୁମ ପିଲାମାନେ ଆଉ ଶାଳ, ପିଆଶାଳ, ଶାଗୁଆନ, ବରଗଛ ଦେଖିବେ କେଉଁଠୁ ? କୁଣ୍ଡରେ

ପକାଇ ଘରେ ରଖ । ନହେଲେ ମ୍ୟୁଜିୟମରେ ରଖ । ତୁମର ପରପୁରୁଷ ଦେଖିବେ ।"

ବୋଉ କଥା ସରଳବେଳକୁ ପ୍ରଭାମୟୀ ପହଞ୍ଚିଗଲେ । ବୋଉ ଅଡ଼କୁ ଲକ୍ଷ୍ୟ କରି କହିଲେ, "ବୁଝିଲ ବୋଉ ! ସରକାରୀ କ୍ୱାର୍ଟରରେ ଆମେ ଗଛ ଲଗେଇଲେ କ'ଣ ଲାଭ କହିଲ ? କୁଣ୍ଡରେ ପକାଇଲେ ଗଲାବେଳକୁ ସାଙ୍ଗରେ ନେଇହେବ । ଯେଉଁ ଘରେ ରହିବ—ବେଶ୍ କୁଣ୍ଡନେଇ ଥୋଇଦିଅ ।"

ବୋଉ ପ୍ରଭାମୟୀଙ୍କ ଅଡ଼କୁ ଗୃହିଁଲେ । ପ୍ରଭାମୟୀ ସରକାରଙ୍କ ବନୀକରଣ ଉପରେ କ୍ଷୁଦ୍ର ଭାଷଣଟିଏ ଆରମ୍ଭ କରୁଥିଲେ ।



# ସ୍ୱପ୍ନାଙ୍କିତ ଡାକ୍ତର ଇତିକଥା

ସୁରବୋଉ ତିନିଦିନ ତିନିରାତି ଖାଡ଼ାଖାଡ଼ା ଉପାସ ରହିଲା ପରେ, ପୁଅ ସୁରେନ୍ଦ୍ର ରାଜିହେଲେ ଫଗୁଣ ମାସରେ ବାହାହେବେ । ସୁରେନ୍ଦ୍ର ବାଣୀବିହାରରୁ ଇତିହାସରେ ଏମ୍. ଏ. ପାସ୍ କଲାପରେ ସେଲ୍‌ଟାକ୍ସ ଚେକ୍‌ଗେଟ୍‌ରେ ଇନ୍‌ସପେକ୍ଟର ଚାକିରି ଆରମ୍ଭ କରିଥାନ୍ତି । ବୟସ ତେଇଶି ପୂରି ଚବିଶ ଚାଲୁଥିଲା । ବୋଉଙ୍କର ଏକା ଜିଦ୍ ଯେ ସେ ଆଉ ଡେରି ନକରି ଘଞ୍ଚୁଡୋଲି ଭିତରେ ପୁଅମୁଣ୍ଡରେ ଡୋଳିମୁକୁଟ ପିନ୍ଧାଇବେ । ଝିଅ ବା କେଉଁ ଅଭାବ ! ଆଜ୍ଞା କହିଲେ କାଲି ମିଳିବେ । ସୁର ସାଙ୍ଗସାଥୀମାନେ ବାହାସାହା ହୋଇ ପିଲାଛୁଆଙ୍କର ବାପ ହେଲେଣି । ସେମାନଙ୍କର ମା'ମାନେ କୋଳରେ କାଖରେ ଗୋଟେ ଦିଇଟା ନାତିନାତୁଣୀ ଧରି ଗାଁଦାଣ୍ଡରେ ଗଲାବେଳେ, ଯେତେବେଳେ ପଚାରିଦିଅନ୍ତି, "ଆଲୋ ସୁରବୋଉ, ସୁରକୁ ବାହା କରିବୁନି କିଲୋ ? ଦିବାନିବାକୁ ଏତେ ଚାହିଁବସିଛୁ କାହିଁକି ବା ? ଭଲ ବୋହୂଟେ ଆଣେ । କେତେଦିନ ଆଉ ବଞ୍ଚିବୁ । ସୁରକୁ ତେଇଶି ପୂରି ଚବିଶ ଚାଲିଲାଣିଟି । ତା' ବୋପା ବାହାରେ ରହିଲା ବୋଲି ପୁଅକୁ କଅଣ ଏମିତି ବୁଢ଼ା କରିବୁ ?" ଗାଁ ମାଇପଙ୍କ କଥାଗୁଡ଼ାକ ସୁରବୋଉଙ୍କ ଦେହରେ ଠାଇଁ ଠାଇଁ ବାଜେ । ସେ ଯେ ସୁର ପାଇଁ ବାହାଘର ଠିକ୍ କରିନଥିଲେ ଏକଥା ମୋଟେ ନୁହଁ । ପାଖ ନରିଶୋ ଗାଁର ଧୋବେଇ ଶତପଥୀଙ୍କ ଝିଅ ସଙ୍ଗେ ବାହାଘର ପକେଇଥିଲେ । ଚମ୍ପାଗୋରି ରଙ୍ଗକୁ ପୁଣି ମାଇନର ପଢ଼ା । ଘରକରଣା କାମରେ କେହି ଝୁଣିବାକୁ ନାହିଁ । ସୁରବୋଉ ନିଜେ ଯାଇ ଝିଅ ହାତରୁ ଚା' ପିଇ ଆସିଥିଲେ । ଦି' ବର୍ଷକାଳ ଧୋବେଇ ଶତପଥୀ ତାଙ୍କ ମୁହଁକୁ ଚାହିଁ ଶେଷକୁ କହିଲେ, "ମୋ ଝିଅକୁ କଅଣ ଆଉ ମୁଁ ଖୁଣ୍ଟରେ ବୁଢ଼ୀ କରିବି ! ତୁମ କଥା ତୁମେ ବୁଝ ସୁରବୋଉ । ପୁରୁଣାବନ୍ଧୁରେ ବନ୍ଧୁ ବାନ୍ଧିବା ପାଇଁ ଏତେଦିନ ଚାହିଁବସି ବସିଲି ।"

ଦି'ବର୍ଷ ହେଲା ଧୋବେଇ ଶତପଥୀ ତାଙ୍କ ଝିଅକୁ ବାହାଦେଇ ସାରିଲେଣି । ତାପରେ ସୁରବୋଉ ପୁଣି ଗୋଟେ ପ୍ରସ୍ତାବ ଧରି ବସିଲେ । ପାଟପୁର ହରିମିଶ୍ରଙ୍କ

ଘରେ । ହେଡ଼ମିସ୍ତ୍ରେ କଲିକତାରେ ସୁନାରଙ୍କ ପାଲିସ୍ ଦୋକାନ କରିଛନ୍ତି । ଛଅଝିଅରୁ ବଡ଼ଝିଅ ନୟାପଡ଼ା ହାଇସ୍କୁଲରୁ ମାଟ୍ରିକ୍ ପାସ୍ କରି ଘରେ ବସିଛି । ସିଲେଇକାମଠାରୁ ହାରମୋନିୟମ୍‌ରେ ଓଡ଼ିଶୀ, ଗୀତ ବୋଲିବାରେ ପାରଙ୍ଗମ । ପ୍ରସ୍ତାବଟା ପୁଣି ତାଙ୍କର ଆଡ଼ୁ ଆସିଥିଲା । ରଜବୁଲି ନାଁରେ ସୁରବୋଉ ପାଟପୁର ଆଡ଼େ ବୁଲିଯାଇ ଝିଅଦେଖା କାମ ସାରି ଦେଇଥିଲେ । ସବୁ ଠିକ୍‌ଠାକ୍ ହେଲା । ହେଡ଼ମିସ୍ତ୍ରେ ବଙ୍ଗାଳୀ ଛାଞ୍ଚରେ ଝିଅ ପାଇଁ ଗଢ଼ିଥିବା ସୁନାଗହଣା, ଗୋପ ମେଳଣରୁ ଆଣିଥିବା ପଲଙ୍କ, ବାସନକୁସନ, ଶିଳଚକି ସବୁ ସୁରବୋଉଙ୍କୁ ଦେଖେଇଥିଲେ । ଅବଶ୍ୟ ଏ ଜିନିଷପତ୍ର ଉପରେ ସୁରବୋଉଙ୍କ ମନ ନଥିଲା । ମାତ୍ର ଝିଅଟିର ଘରକରଣାପଣିଆ, ସୁନ୍ଦର ଗାଇବା ଢଙ୍ଗ ଦେଖି ସେ ରାଜି ହୋଇଥିଲେ । ଏତେସବୁ କଥାବାର୍ତ୍ତା ସରିଲା ପରେ ସୁର ମନା କରିଦେଲା । ଏମ୍. ଏ. ନସରିବା ପର୍ଯ୍ୟନ୍ତ ବାହାଘର ହୋଇପାରିବ ନାହିଁ । ପାଠପଢ଼ା କଥା ଉପରେ ଜୋର୍‌ଦେଇ ସୁର ଯେତେବେଳେ ସବୁଗୁଡ଼ିକ ବିବାହ ପ୍ରସ୍ତାବକୁ ପଛେଇ ଦେଲା, ସେତେବେଳେ ସୁରବୋଉ ଆଉ କିଛି କହିପାରି ନଥିଲେ ।

ଚାକିରିରେ ଜଏନ୍ କଲାପରେ ଦଶହରା ଛୁଟିରେ ସୁର ଘରକୁ ଆସିଥିଲା । ସୁରବୋଉ ବାହାଘର କଥା ପୁଅ ଆଗେ କହିଥିଲେ । ବାପ ତ ବିଦେଶରେ, ସେ ମଗୁଶିର ମାସ ପହିଲିବେଳକୁ ଆସିବେ ବୋଲି ଚିଠି ଲେଖିଛନ୍ତି । ମଗୁଶିର ମାଘମାସ ଭିତରେ ଝିଅଘର ଠିକ୍ କଲେ. ଫଗୁଣ ମାସରେ ବାହାଘର କରିବା କଥା । ମାତ୍ର ସୁରର ସେଇ ଟାଳଟୁଳ କଥା । କାହିଁକି ଏତେ ତରତର । ସେ ଓ. ଏ. ଏସ୍. ପରୀକ୍ଷା ଦେଉଛି । ଆଉ ବର୍ଷେ ଯାଉ । ବାହାହେବା ପାଇଁ କଅଣ ବୟସ ଗଡ଼ିଗଲାଣି ! ସୁର ବୋଉଙ୍କ କଥାକୁ ଏପଟସେପଟ କହି ବାଏଁ ବାଏଁ ଉଡ଼େଇ ଦେବାକୁ ବସିଥିଲା, ମାତ୍ର ବୋଉ ଏଥର ଛାଡ଼ିବା ପାତ୍ରୀ ନୁହଁନ୍ତି । ତଥାପି ବୋଉକୁ ବୁଝେଇସୁଝେଇ ସୁର ଦଶହରା ଛୁଟିପରେ ଚାକିରିକୁ ଫେରିଲା ।

ଏଥିମଧ୍ୟରେ ଘଟଣାଟି ଅନ୍ୟପ୍ରକାର ରୂପ ଧରିଲା । ଭୁବନେଶ୍ୱରରୁ ବୈକୁଣ୍ଠବାବୁ ଗାଁକୁ ଆସିଥିଲେ । ସୁରବୋଉଙ୍କୁ ସେ ଆଈ ଡାକନ୍ତି । ଗାଁଗଣ୍ଡାରେ ଆଈ, ମାମୁ, କକେଇ ଡାକ ବୟସ ଉପରେ ନିର୍ଭର କରେନି । ବୟସରେ ଢେରଣ ବର୍ଷର ସାନଲୋକକୁ ମଧ୍ୟ ଅଜା ଡକାଯାଏ । ବୈକୁଣ୍ଠ ସୁରବୋଉଙ୍କଠାରୁ ବୟସରେ ଦଶବର୍ଷ ବଡ଼ ହୋଇଥିଲେ ମଧ୍ୟ ତାଙ୍କୁ ଆଈ ଡାକନ୍ତି, ଗାଁ-ଗଣ୍ଡାର ଚଳଣି । ବୈକୁଣ୍ଠ ଗାଁ ବୁଲିଗଲାବେଳେ ଆଈଙ୍କ ସଙ୍ଗେ ପଦେ ଦୁଇପଦ ସୁଖଦୁଃଖ ହୋଇଥିଲେ । ସେତିକିବେଳେ ବୈକୁଣ୍ଠ ଆଈଙ୍କ କାନରେ ପକାଇ ଦେଇଥିଲେ ଯେ ସୁର ଏମ. ଏ. ପଢ଼ୁଥିଲାବେଳେ ତାର ଦୁଇଜଣ ମହାନ୍ତିଘର ଝିଅ ନମିତା ଆଉ ସବିତା ସଙ୍ଗେ ଭଲ ସମ୍ପର୍କ ଥିଲା । ଭାରି ସୁନ୍ଦର ଝିଅ । ବଡ଼ଲୋକ ଘର ।

ଏକା ସଙ୍ଗେ ପଢ଼ନ୍ତି । ସ୍ୱର ତାଙ୍କ ଘରକୁ ଯିବାଆସିବା କରେ । ବୈକୁଣ୍ଠ ଠାରୁ ଏତକ ଶୁଣିଲା ପରେ ସୁରବୋଉଙ୍କ ମନରେ ଭୂତ ପଶିଲା । ସ୍ୱର କାହିଁକି ବାହା ହେବାକୁ ମନା କରୁଛି । ପାଠ ସରିଲେ ବାହାହେବ ବୋଲି କହୁଥିଲା । ଏବେ ପାଠପଢ଼ା ସରିଲା, ପୁଣି ଚାକିରି କଲା । ତଥାପି କାହିଁକି ଟାଳଟୁଳ କରୁଛି । କଥାର ଗଣ୍ଠି ଟା ଏତେଦିନକେ ବୈକୁଣ୍ଠ ତାଙ୍କ ଆଗରେ ଫିଟେଇଦେଲା । ଶେଷକୁ ସ୍ୱର ବାହାହେବ କରଣ ଘରେ । କରଣଘର ଝିଅ ଆସି ତାଙ୍କ ପିତୃପୁରୁଷଙ୍କୁ ପାଣି ଦେବ, ମାଣ ବସେଇବ । ସୁରବୋଉ ଆଉ ଭାବି ପାରିଲେନି । ସଙ୍ଗେ ସଙ୍ଗେ ଡାକ-ଘରକୁ ଲୋକ ପଠାଇ ଟେଲିଗ୍ରାମ କରାଇଦେଲେ । ପନ୍ଦରଦିନ ମଧ୍ୟରେ ବିଦେଶରୁ ସୁରର ନନା ଆସି ପହଞ୍ଚିଲେ । ପୁଅ ମଧ୍ୟ ଚାକିରିରୁ ଛୁଟିନେଇ ପହଞ୍ଚିଲା । ସୁରବୋଉ ଅନ୍ନଜଳ ଛୁଉଁ ନଥାନ୍ତି । ସ୍ୱର ଜବାବ ନଦେଲେ ଶୁଖିଶୁଖି ମରିବେ ପଛେ ପାଣି ଟୋପେ ଛୁଇଁବେନି ବୋଲି ଜିଦ୍‌ଧରି ସତ୍ୟ କରିଥାନ୍ତି ।

ହଠାତ୍ ବୋଉଙ୍କ ଅନଶନ, ଧର୍ମଘଟ ସୁରକୁ ଅଡୁଆରେ ପକାଇଦେଲା । ବାପ ବି ବୁଝାଇଲେ ମାତ୍ର ସୁରବୋଉ ମାନିବାକୁ ପ୍ରସ୍ତୁତ ନଥିଲେ । ଏକା ଜିଦ୍, ହାଡ଼ିଆ ନାହାକ କହୁଛି ପଞ୍ଚୁଦୋଳକୁ ପୁଅର ବାହାଘର ପାଇଁ ଭଲ ସୁଟ୍ କରୁଛି, ଝିଅ ଠିକ୍ କଲେ ବାହାଘର ହେବ । ଏଇ ଜବାବ ଦେଲେ ସେ ପାଣି ଗ୍ରହଣ କରିବେ । ଶେଷକୁ ତାଙ୍କ ଜିଦ୍ ରହିଲା । ଆଉ ସୁର ଜବାବ ଦେଲେ ଯେ ସେ ବାହାହେବ ମାତ୍ର ଗୋଟିଏ ସର୍ତ୍ତରେ । ସର୍ତ୍ତିଟି ଶୁଣାଇ ସୁର କହିଲା ଯେ, ସେ ବାହାହେବ, ଫଗୁଣ ମାସରେ, ପୁଣି ବ୍ରାହ୍ମଣ ଘରେ, ମାତ୍ର ସେ ଠିକ୍ କରିଥିବା ପାଞ୍ଚୋଟି ବ୍ରାହ୍ମଣ କନ୍ୟା ମଧ୍ୟରୁ ଜଣକୁ । ଯଦିଓ ତାଙ୍କ ସଙ୍ଗରେ କୌଣସି ପ୍ରକାର ବିଶେଷ ସମ୍ପର୍କ ନାହିଁ, ମାତ୍ର ସମସ୍ତଙ୍କ ସଙ୍ଗେ ଆନ୍ତରିକତା ଅଛି । ସେମାନଙ୍କ ମଧ୍ୟରୁ ଯଦି କୌଣସି କନ୍ୟା ତାଙ୍କୁ ବିବାହ ହେବାକୁ ରାଜି ହୁଅନ୍ତି, ତାହାହେଲେ କନ୍ୟା ନଦେଖି, ଯୌତୁକ ଇତ୍ୟାଦିକୁ ବାଦ୍‌ଦେଇ ସେ ପଞ୍ଚୁଦୋଳ ଭିତରେ ବାହା ହେବାକୁ ପ୍ରସ୍ତୁତ । କନ୍ୟାପିତାଙ୍କ ଠିକଣା ଠିକ୍‌କରି ସୁରବୋଉଙ୍କ କଥାନୁସାରେ ସୁରନନା ଓ ତାଙ୍କ ଶଳା ପଞ୍ଚକନ୍ୟାଙ୍କ ଘରକୁ ବିବାହ ପ୍ରସ୍ତାବ ଧରି ବାହାରିଲେ ।

ପ୍ରଥମ ପ୍ରସ୍ତାବ ଧରି ସେମାନେ ପହଞ୍ଚିଲେ ସ୍କୁଲ ଇନସ୍‌ପେକ୍ଟର ଷଡ଼ଙ୍ଗୀ ବାବୁଙ୍କ ଘରେ, ଝିଅ ସୁକାନ୍ତି ବିଷୟରେ । ସୁକାନ୍ତିକୁ ସ୍ୱର ଚିହ୍ନିଥିଲା ଗୋଟିଏ ଅଘଟଣରୁ । ୧୯୬୨ ମସିହାରେ ପୃଥିବୀର ପ୍ରଥମ ମହିଳା ଅନ୍ତରୀକ୍ଷ ଯାତ୍ରୀ ଭାଲେନ୍ତିନା ତେରେସ୍କୋଭ ଆସୁଥାନ୍ତି ଭୁବନେଶ୍ୱର । ସେମାନଙ୍କୁ ସ୍ୱାଗତ କରିବା ଲାଗି ଭୁବନେଶ୍ୱରର ବିମାନବନ୍ଦର ଲୋକାରଣ୍ୟ । ଓଡ଼ିଶୀ ପ୍ରଥାରେ ସ୍ୱାଗତ ପାଇଁ

କ୍ୟାପିଟାଲ୍ ବାଳିକା ବିଦ୍ୟାଳୟର ୨୧ ଜଣ ଷ୍ଟୁଡେଣ୍ଟ ଝିଅ ହାତରେ ଫୁଲ ଥାଳି ଧରି ଠିଆ ହୋଇଥାନ୍ତି । ସେମାନଙ୍କ ଭିତରେ ଥିଲି ସୁକାନ୍ତି । ସେ ସେତେବେଳେ ଦଶମ ଶ୍ରେଣୀର ଛାତ୍ରୀ । ଭିଜେନ୍ଦ୍ରନାଙ୍କର ବିମାନ ଅବତରଣ ମାତ୍ରେ ଦର୍ଶକମାନେ ବିଶୃଙ୍ଖଳିତ ହୋଇ ପୁଲିସ ଘେରଭାଙ୍ଗି ମାଡ଼ିଗଲେ । ତା' ଭିତରେ ହାତରେ ପୁଷ୍ପଥାଳି ଧରି ଠିଆ ହୋଇଥିବା ଝିଅମାନେ ଦଲାଚକଟା ଭିତରେ ପଡ଼ିଗଲେ । ଅସାମାଜିକ ଯୁବକଙ୍କ ପାଇଁ ତାହା ଥିଲି ଗୋଟିଏ ସୁନ୍ଦର ମଉକା । ଅସାମାଜିକ ଯୁବକଙ୍କ ହାତରେ ଶିକାର ହେବା ପୂର୍ବରୁ ସୁର ସୁକାନ୍ତିକୁ ରକ୍ଷାକରି ଗହଳି ବାହାରକୁ ନେଇ ଆସିଥିଲି । ସେଇଦିନଠାରୁ ସୁକାନ୍ତି ସହିତ ମଧ୍ୟ ଆନ୍ତରିକତା ବଢ଼ି ଉଠିଥିଲି । ପ୍ରସ୍ତାବ ଧରି ଗଲାପରେ ଷଡ଼ଙ୍ଗୀବାବୁ ଖୁସିହୋଇ ରାଜିହେଲେ ମାତ୍ର ସେ ମନା କରିଦେଲେ ସେ ବର୍ଷ ବାହାଘର କରିପାରିବେ ନାହିଁ । କାରଣ ବଡ଼ଝିଅ ବାହାହେବା ପାଇଁ ଠିକ୍ ହୋଇନାହିଁ । ତା'ର ଠିକ୍ ନହେଲେ ସାନର ବା କମିତ ବାହାଘର ହେବ । ସେଇଠୁ ଶଳା ଛଣେଇ ଫେରିଲେ । ପରେ ପ୍ରସ୍ତାବ ଧରି ଗଲେ ଡଲିପଣ୍ଡା ଘରକୁ । ସେମାନେ ଶାସନୀ ନୁହଁନ୍ତି । ସୁରବାପା ମନେ ମନେ ଏ ପ୍ରସ୍ତାବକୁ ଅନୁମୋଦନ କରୁ ନଥିଲେ । ମାତ୍ର ସୁର ଯେତେବେଳେ କହୁଛି, ସିବାକୁ ହେବ । ତା'ଛଡ଼ା ଆଜିକାଲି ପଣ୍ଡା ବ୍ରାହ୍ମଣ, ଶାସନୀ ବ୍ରାହ୍ମଣ ଘରେ ବନ୍ଧୁ ବାନ୍ଧିବାରେ ତଫାତ୍ କ'ଣ । ଡଲି ପଣ୍ଡା ସଙ୍ଗେ ସୁରର କଲେଜ ଡ୍ରାମାରୁ ଚହ୍ଲା । ଡଲି ପଣ୍ଡାକୁ ନେବାଆଣିବା ଆଉ ଡ୍ରାମାରେ ଏକତ୍ର ପାର୍ଟ କରିବା ମଧ୍ୟରେ ଦୁହିଁଙ୍କ ମନ ଏକପ୍ରକାର ପାଖେଇ ଯାଇଥିଲି । ଡଲି ପଣ୍ଡାର ବାପା ଥିଲେ ଡେପୁଟି ସେକ୍ରେଟାରୀ । ତା' ସହିତ ସୁରର ପ୍ରସ୍ତାବକୁ ସେ ମନଖୋଲି ଅନୁମୋଦନ କଲେନି କି ଡଲି ମନଖୋଲି ଆଜିକାଲିର ଝିଅ ପରି ବାପା ଆଗେ ତା' ମନକଥା କହିପାରିଲି ନାହିଁ । ମନେ ମନେ ଖୁସି ହୋଇ ସୁରବାପା ସେଇଠୁ ଫେରିଲେ ।

ଦୁଇଦିନ ବୈକୁଣ୍ଠଙ୍କ ବସାରେ ରହିବା ପରେ ତୃତୀୟ ଦିନ ବାହାରିଲେ ପ୍ରିୟମ୍ବଦାଙ୍କ ଘରକୁ । ପ୍ରିୟମ୍ବଦା ଥିଲେ ବିଜ୍ଞାନ ଛାତ୍ରୀ । ସୁନ୍ଦର ସଙ୍ଗୀତ ଗାଆନ୍ତି । କଲେଜ ୟୁନିଅନ ଇଲେକ୍‌ସନରେ ଠିଆହେଲାବେଳେ ପ୍ରିୟମ୍ବଦା ଥିଲେ ସୁରଙ୍କ ଷ୍ଟ୍ରଙ୍ଗ ସପୋର୍ଟର । ଦୁଇବର୍ଷ ପଢ଼ା ଭିତରେ ଦୁହେଁ ଦୁହିଁଙ୍କୁ ଭଲପାଇ ବସିଥିଲେ ଯଦିଓ ଆଜିକାଲିକା ଝିଅପିଲାଙ୍କ ପରି ଭଲପାଇବା ନୁହଁ । ବିବାହ ପ୍ରସ୍ତାବ ନେଇ ସୁରନନା ଗଲାବେଳକୁ ପ୍ରିୟମ୍ବଦା ଡାକ୍ତରୀ ଶେଷ ବର୍ଷର ଛାତ୍ରୀ । ତାଙ୍କ ବାପା ବିବାହ ପ୍ରସ୍ତାବରେ ରାଜି ହେଲେ, ମାତ୍ର ଝିଅର ଡାକ୍ତରୀ ପରୀକ୍ଷା ନ ସରିବାଯାଏ କିଛି ମତାମତ ଦେବାକୁ ନାସ୍ତି କରିଦେଲେ । ତୃତୀୟ କନ୍ୟାଘର ମନାକଲା ପରେ ସୁରନନା ଯାଇଥିଲେ ସୁନ୍ଦର ଗାଁ ହରିମିଶ୍ରଙ୍କ ଘରକୁ । ହରିମିଶ୍ରଙ୍କ ଝିଅ ସ୍ନେହପ୍ରଭା

ସଙ୍ଗେ ବନ୍ଧୁ ଆଗରୁ ଗାଉଁଲୀଙ୍କବେ ଥରେଅଧେ ପ୍ରସ୍ତାବ ପଡ଼ିଥିଲା । ସ୍ନେହ ମାଟ୍ରିକ ପାସ କଲାପରେ ଘରେ ଥାଏ । ସୁର ନୂଆଳୀ ସ୍କୁଲରେ ପାଠ ପଢ଼ିବା ସମୟରେ ସୁନ୍ଦର ଗାଁ ସ୍କୁଲ ସଙ୍ଗେ ଫୁଟ୍‌ବଲ୍ ମ୍ୟାଚ ଖେଳିବାକୁ ଆସିଥିଲା ବେଳେ ସ୍ନେହପ୍ରଭାଙ୍କ ସଙ୍ଗେ ପରିଚୟ । ପ୍ରଥମ ପରିଚୟରେ ସେ ସ୍ନେହ ପ୍ରତି ଆକୃଷ୍ଟ ହୋଇଥିଲେ । ସ୍ନେହର ବାପା ପୁରୁଣାକାଳିଆ ଜମିଦାରିଆ ଲୋକ । ସେତେବେଳକୁ ଜମିଦାରୀ ଚାଲିଯାଇଥିଲେ ମଧ—କର୍ପୂର ଉଡ଼ିଗଲେ କନା ଯେପରି ପଡ଼ିରହେ, ସେଇପରି ମିଶ୍ରଙ୍କ ଫିକା ପ୍ରତିପତ୍ତି ସେ ଅଞ୍ଚଳରେ ଥିଲା । ସୁରନନା ପ୍ରସ୍ତାବ ନେଇ ମିଶ୍ରଙ୍କ ଘରେ ପହଞ୍ଚିଲା ପରେ, ମିଶ୍ରେ ଆରମ୍ଭ କଲେ ତାଙ୍କର ବାପା ଯେତେବେଳେ ଘୋଡ଼ାରେ ଚଢ଼ି ଜମିଦାରୀ ଦେଖିବାକୁ ଯାଉଥିଲେ, କେତେଥର ତାଙ୍କ ଗାଁ ଦେଇ ଯାଇଛନ୍ତି ଇତ୍ୟାଦି । ସେ ତାଙ୍କର ପୂର୍ବ ବନ୍ଧୁବାନ୍ଧବ ରାୟବାହାଦୁର ଭୋଳାନାଥ ମିଶ୍ର, ରାୟସାହେବ ଦାସ ମହାପାତ୍ରଙ୍କ ଘରେ ତାଙ୍କ ବନ୍ଧୁବାନ୍ଧବର ଦୀର୍ଘସୂଚନା ଦେଲେ । ସୁରନନା ଯଦିଓ ମିଶ୍ରଙ୍କ ଜମିଦାରୀରେ ପ୍ରଜା ନଥିଲେ ମାତ୍ର ତାଙ୍କ ଜମିଦାରିଆ ହାକମ କଥା ବହୁଦିନରୁ ଶୁଣିଛନ୍ତି । ମିଶ୍ରଙ୍କ ନାତିଦୀର୍ଘ ସୂଚନା ଭିତରେ ପୁରୁଣାକାଳିଆ କାଚଥାଳିଆରେ ପାନ, ଗୁଣ୍ଡି, ଅଲେଇଚ, ଲବଙ୍ଗ ଆଣି ଥୋଇ ଦେଇଗଲେ ତାଙ୍କର ପୁରୁଣା ଦେହରକ୍ଷୀ ରାମବାରିକ । ଶେଷକୁ ଖବର ଆସିଲା ଯେ, ଜମିଦାର ହରିମିଶ୍ରେ, ସୁର ଘରେ ବନ୍ଧୁବାନ୍ଧବାକୁ ପସନ୍ଦ କଲେନି ଏବଂ ପ୍ରସ୍ତାବକୁ ନାକଚ କରିଦେଲେ ।

ଗୋଟାଏ ପରେ ଗୋଟାଏ ପ୍ରସ୍ତାବ କାଟ୍ ଖାଇଲା ପରେ ସୁରନନା ମନେ ମନେ ବଡ଼ ବିରକ୍ତ ହେଲେ । ହ୍ୟାପୋ ଏମ୍. ଏ. ପାସ୍‌କରି ଚାକିରିଆ ପୁଅ ପାଇଁ ଝିଅ ଅଭାବ । କନ୍ୟାପକ୍ଷବାଲା ତାଙ୍କ ଘରେ ଡେଇଁ ପଶିବା କଥା । ସେ ଖଟ ଉପରୁ ଗୋଡ଼ ଲମ୍ବେଇ, ପାନଚୋବେଇ ଟାଲ୍‌ଟୁଲ କରି କନ୍ୟାପକ୍ଷଙ୍କ ମଗଜ ପରୀକ୍ଷା କରିବା ପରିବର୍ତ୍ତେ ସେ ଯାଉଛନ୍ତି କନ୍ୟା ଖୋଜିବାକୁ । ଗୋଟେ ପଟେ ସୁରବୋଉ, ଅନ୍ୟପଟେ ସୁର, ମଝିରେ ମହାନ୍ତିଆଣି ଝିଅ ସଙ୍ଗେ ସୁରର ରେଜେଷ୍ଟ୍ରୀ ମ୍ୟାରେଜ କରିଯିବାର ଆଶଙ୍କା ପୁଣି ତାଙ୍କୁ କାଖରେ ଛତାବାଡ଼ି ଧରି ଘରୁ ବାହାର କରିଦେଲା । କାଗଜ ଖୋଲି ଠିକଣା ଦେଖିଲେ ପଞ୍ଚମ ଆଉ ଶେଷ କନ୍ୟା ଅନୁପମାର ଠିକଣା ।

ପାଞ୍ଜି ଦେଖି, ବାର ଖୋଜି, ନାକପୁଡ଼ାରେ ନିଶ୍ୱାସ କରି ଶେଷଥର ପାଇଁ ବାହାରିଲେ କଟକ । ନୂଆଳୀ-କଟକ ପ୍ରାଇଭେଟ ବସ୍ ସର୍ଭିସରେ କଟକ ପାଖେ ପହଞ୍ଚିଲା ବେଳକୁ ଦିନ ଏଗାର । କଟକ ସହର ଧବଳଟଗର । ପୁଣି କଟକିଆଣୀ ଝିଅ ବୋହୂ କରିବେ କମ୍ ଭାଗ୍ୟର କଥା ନୁହଁ ।

ସୁର ସାଙ୍ଗେ ଅନୁପମାର ପରିଚୟ ୧୯୬୪ ଛାତ୍ର ଆନ୍ଦୋଳନ ବେଳେ ବାଣୀବିହାରରେ । ପୋଲିସ ଘେର ଡେଇଁ ଆଗକୁ ବଢ଼ି ଯାଇଥିଲା ସୁର ଅନୁପମାର ପ୍ରେରଣାରେ । ଛାତ୍ରନେତା ସୁର ମୁଣ୍ଡରେ ଆଙ୍ଗୁଠିର ରକ୍ତତିଳକ ଆଙ୍କି ଦେଇଥିଲା ଅନୁପମା । ସୁରବାପା ଘର ଖୋଜି କଟକରେ ନିତ୍ୟାନନ୍ଦ ଦାସଙ୍କ ଘରେ ପହଞ୍ଚିଲା ବେଳକୁ ଦିନ ଦୁଇ । ଦାସେ ଆପଣେ ନଥାନ୍ତି । ଖବର ଗଲା ମଫସଲରୁ ଜଣେ କିଏ ଆସିଛନ୍ତି । ଦିନ ତିନଟା ବେଳକୁ ଦାସେ ଆସିଲେ । ସୁରନନା ନିଜର ପରିଚୟ ଦେଇ ବସିଲେ । କିନ୍ତୁ ସେ ପ୍ରସ୍ତାବ ନେଇ ଯିବାର ପନ୍ଦରଦିନ ଆଗରୁ, ଅନୁପମାଙ୍କର ରୋଗଜନିତ ମୃତ୍ୟୁ ଘଟିଥିଲା ।

ଅଫିସରେ ଥାଇ ସୁର ଗାଁରୁ ଟେଲିଗ୍ରାମ ପାଇଲା ଘରକୁ ଯିବାପାଇଁ । ଟେଲିଗ୍ରାମର ଉଦ୍ଦେଶ୍ୟ ସେ ଭଲଭାବେ ଜାଣିଥିଲା । ଦୁଇଦିନ ଛୁଟି ଧରି ଘର ପିଣ୍ଡାଉପରକୁ ଉଠିଲାବେଳକୁ, ସୁରବୋଉ କାନ୍ଦଣା ଆରମ୍ଭ କରିଦେଲେ । ତାଙ୍କ କାନ୍ଦଣା ଭିତରେ ସେ କହିଦେଲେ ଯେ, ସୁରର ଯଦି ମହାନ୍ତିଘର ଝିଅକୁ ବାହାହେବା କଥା, ତା'ହେଲେ ସେ ବୁଢ଼ା ବାପଟାକୁ ଏତେଆଡ଼େ ଛତାବାଡ଼ି ଧରି ପଠାଇ କାହିଁକି ଅପଦସ୍ଥ କଲା । ପାଠ ପଢ଼େଇଥିଲା ପୁଅର କଅଣ ଏଇ ବିବେକ ବୁଦ୍ଧି ହବା ପାଇଁ ? କାନ୍ଦଣା ଶୁଣି ସାଇ ମାଇପେ ସମସ୍ତେ ସୁରବୋଉଙ୍କୁ ଘେରିଯାଇଥିଲେ । ସମସ୍ତେ ବହେ ସୁରକୁ ବକି ଦେଇଗଲେ ।

ସବୁ ଶୁଣିଲା ପରେ ସୁର ଜବାବ ଦେଲା ଯେ, ସେ ଆଉ କେଉଁଠିକି ଝିଅ ଦେଖି ଯିବନି । ନନା ଯେଉଁଠି ଠିକ୍ କରିବେ, ସେ ସେଇଠି ବାହା ହେବ । ସୁରଠାରୁ ଠିକଣା ଜବାବ ପାଇଲା ପରେ ସୁରବୋଉଙ୍କ କାନ୍ଦଣା ବନ୍ଦ ହେଲା ।

ଆଠଦିନ ପରେ ଗାଁ ପାଖ ଆଲୋଇ ଶାସନରୁ ଗୋପୀ ନନ୍ଦେ ପ୍ରସ୍ତାବ ଧରି ସୁରଘରେ ପହଞ୍ଚିଲେ । ତାଙ୍କ ନାତୁଣୀ ପୁରୀ ମହିଳା କଲେଜରେ ବି. ଏ. ପଢ଼ୁଛି, ପୁଅ ସେକ୍ରେଟାରିଏଟ୍‌ରେ ଅଣ୍ଡର-ସେକ୍ରେଟାରୀ । ଭୁବନେଶ୍ୱରରେ ରୁହନ୍ତି । ପାଖ ଗାଁ ବନ୍ଧୁରେ ବନ୍ଧୁ ବାନ୍ଧିବାକୁ ତାଙ୍କର ଇଚ୍ଛା । ସଙ୍ଗେ ସଙ୍ଗେ ହାଡ଼ିଆ ନାହାକକୁ ଡକାଗଲା । ଭଲରେ ଭଲରେ ଜାତକ ସୁଝିଲା । ନନ୍ଦଙ୍କ ଅନୁରୋଧରେ ସୁରନନା ଗଲେ ବୋହୂ ଦେଖିବାକୁ ଭୁବନେଶ୍ୱର । ବୋହୂ ଦେଖି ମନୋନୀତ ହେବାରୁ ବୋହୂ ହାତରେ ମୁଦି ପିନ୍ଧାଇ ଘରକୁ ଫେରିଲେ । ଠିକ୍ ହେଲା ବାହାଘର ପଞ୍ଚୁଦୋଳ ଭିତରେ ହେବ ।

କଥାଟା ସୁର କାନକୁ ଆସିଲା । ଝିଅ ଦେଖିବାକୁ ପ୍ରକାରାନ୍ତରେ ଖବର ଦିଆଗଲା । ମାତ୍ର ସେ ମନାକରି ପଠେଇଲା ଝିଅ ଦେଖିବନି । ତା'ଛଡ଼ା ନନା

ଯେତେବେଳେ ବୋହୂ ଦେଖି ମୁହଁ ଫିଙ୍ଗେଇ ସାରିଲେଣି, ତା'ପରେ ଆଉ ଗୋଟେ ଝିଅ ଦେଖାଦେଖି କ'ଣ ?

ଝଙ୍କୁଦୋଳ ଭିତରେ ବାହାଘର ହେଲା । ବାହାଘର ପରେ ପୁଅବୋହୂ ଭୁବନେଶ୍ୱରରୁ ମଫସଲ ଗାଁକୁ ଜିପ୍‌ରେ ଆସିଲେ । ବୋହୂର ଖରଖୋର, କଳଚପଳ ଟ୍ରଙ୍କ୍‌ରେ ଲୋଡ୍ ହୋଇ ଜିପ୍ ପଛେ ପଛେ ଆସିଲା । ଗାଁମୁଣ୍ଡରେ ଜିପ୍ ପହଞ୍ଚିଲା । ଖବର ପାଇ ଗାଁଯାକର ଜୁଆପିଲା, ମରଦ ମାଇପେ ସୁରଘର ଦାଣ୍ଡରେ ଭିଡ଼ ଜମେଇ ଥାଆନ୍ତି । ବୋହୂ ମୁହଁ ଦେଖିବେ, କଳଚପଳ ଦେଖିବେ । ବୋହୂ ମୁହଁ ଦେଖି ସମସ୍ତଙ୍କ ମନରେ ଖୁସି ଶିହରଣ ଖେଳିଗଲା । ସାଇମାଇପେ କହିଲେ, ସୁରବୋଉ ଖୋଜି ଖୋଜି ଗୋଟେ ବୋହୂ କଲା । ସୁରବୋଉଙ୍କ ଆନନ୍ଦ କହିଲେ ନସରେ । ବି. ଏ. ପଢ଼ୁଆ ବୋହୂ ପୁଣି ବଡ଼ଲୋକ ଝିଅ । ତାଙ୍କ ଗୋଡ଼ତଳେ ପଡୁ ନଥାଏ ।

ଶାଶୁଘରେ ଷୋଳମଙ୍ଗଳା କଟାଇଲା ପରେ, ସମୁଧୀ ଗାଡ଼ିପଠାଇ ବୋହୂକୁ ନେଇଗଲେ । ସୁରବୋଉ ମନା କରିପାରିଲେନି । କଲେଜପଢ଼ୁଆ ଝିଅ, ମଫସଲରେ ଚଳିନି । ଯାଉ, କେତେଦିନ ବା ଯିବ । ବୋହୂ ହୋଇ ଯେତେବେଳେ ସବୁଦିନ ପାଇଁ ଆସିଲାଣି ପରେ ମନ ଘରଧରିବ । ହେଲେ ତାଙ୍କ ମନକଥା ମନରେ ରହିଲା । ଚାକିରି ବାହାନାରେ ସୁର ବୋହୂକୁ ଧରି ଓଡ଼ିଶାର ଏ କୋଣରୁ ସେ କୋଣ ବୁଲିଲା । ବର୍ଷକୁ ଥରେଅଧେ ପର୍ବପର୍ବାଣିରେ ଗାଁକୁ ଆସିଲେ ଯଥେଷ୍ଟ । ଗାଁରେ ଦୁଇଦିନ ଦିନରୁ ଅଧିକ ରହିବାକୁ ପ୍ରଭା ପସନ୍ଦ କରିନ୍ତିନି । ଶାଶୁ ଯେତେପ୍ରକାର ଗ୍ରନ୍ଥିନାହୁଁ ପକାଇଲେ ବି ଫଳ କିଛି ହୁଏନି । ବରଂ ପ୍ରଭା ଶାଶୁଙ୍କୁ ତାଙ୍କ ସଙ୍ଗେ ଯିବାପାଇଁ ପ୍ରବର୍ତ୍ତାନ୍ତି । ସାଇମାଇପେ କେତେ କଥା ଦେଖେଇ ଶିଖେଇ କୁହନ୍ତି—"ଆଲୋ, ସୁରିଆବୋଉ, ବାଛି ବାଛି ପାଠୋଇ ବୋହୂ କଲା । ଦିନେ ହେଲେ ତ ବୋହୂ ପରଷା ଖାଇଲାନି । ଆଉ ବୋହୂ ସେବା କଥା ତ ଗୁଡ଼ ।" ସାଇମାଇପଙ୍କ କଥାକୁ କାଟି ସୁରବୋଉ କହନ୍ତି "ସୁର ଚାକିରିଆ ପିଲା, ବୋହୂକୁ କଅଣ ଗାଁରେ ବସେଇ, ବିଦେଶରେ ହୋଟେଲରେ ଖାଇବ । ସରକାର ତ ଘର ଦେଇଛନ୍ତି, ଗାଡ଼ି ଦେଇଛନ୍ତି, ବୋହୂକୁ ସାଙ୍ଗରେ ନନେଇ ଗାଁରେ ରଖିବ କ'ଣ ପାଇଁ ?"

ସୁର ଚାକିରିରେ ପ୍ରମୋସନ ପାଇ ବଡ଼ ଅଫିସର ହେଲା । ପିଲାଛୁଆର ବାପ ହେଲା । ନାକର ଗାଡ଼ିମଟର କଲା, ମାତ୍ର ସୁରବୋଉଙ୍କ ମନରୁ ଦୁଃଖ ଗଲାନି । ସୁର ପାଖରୁ ପଇସାପତ୍ର ସେ ଚାହିଁ ନଥିଲେ । ନାତିନାତୁଣୀଙ୍କୁ ପାଖରେ ଦେଖିବାକୁ ତାଙ୍କର ଅଳି । ସେମାନଙ୍କୁ ଗାଁକୁ ଡାକିଲେ, ପ୍ରଭା ପ୍ରଥମେ ମଙ୍ଗ

ମୋଡ଼ନ୍ତି । ଗାଁରେ ଧଳପୋଖରୀ, କାଦୁଅ ରାସ୍ତା । ପାଇଖାନା ନାହିଁ କି ବାଥରୁମ୍ ନାହିଁ, ପିଲାଗୁଡ଼ାକ ଚଳିବେ କେମିତି ? ପିଲାମାନେ ଗାଁରେ ଜେଜମା ପାଖେ ରହିବାକୁ ଭଲପାଇଲେ ମଧ୍ୟ ମମି କବଳରୁ ବାହାରିବା କାଠିକର ପାଠ ହୁଏ । ସୁରବୋଉ ମନେ ମନେ ଭାବନ୍ତି କେତେ କଷ୍ଟକରି ସୁରକୁ ପଢ଼େଇଥିଲି, ଖୋଜି ଖୋଜି ପାଠୋଈ ବୋହୂ କଲି, ପ୍ରତିବାଦ ନକରି ପୁଅ ସଙ୍ଗେ ବୋହୂକୁ ପଠେଇ ଗାଁରେ ଏକୁଟିଆ ରହିଲି, ଏଇ ବୁଢ଼ୀଦିନରେ ବୋହୂ ଟିକିଏ ନାତିନାତୁଣୀଙ୍କୁ ବି ତାଙ୍କ ପାଖକୁ ଛାଡ଼ୁନାହିଁ । ପାଠ ପଢ଼ୁଥିବାବେଳେ କିଏ କହୁଛି ସେମାନଙ୍କୁ ଆସିବାକୁ । ଛୁଟି ଦିନରେ ଦିନଟିଏ କମ୍ବା ଓଳିଏ ବୁଲିଗଲେ ତାଙ୍କ ମନଖୁସି । ତାଙ୍କ ମନକଥା ମନରେ ରୁହେ । "ଅଜାଗା ଘା' ଦେଖେଇ ହୁଏନା କି ଦେଖି ହୁଏନି ।" ସୁରନନା ଥିଲେ ବା ତାଙ୍କ ଆଗେ ଦୁଃଖ କହନ୍ତେ । ସେ ତ ତାଙ୍କୁ ଛାଡ଼ି ଆଗେ ଆଗେ ଚାଲିଗଲେ । ଘରସଂସାର, ଜମିବାଡ଼ି, ସବୁ ତାଙ୍କରି ଉପରେ । ଯକ୍ଷ ପରି ସେ ଜଗି ବସିଛନ୍ତି । ନିର୍ଜନ ପ୍ରହରରେ ଏକୁଟିଆ ବସି ସେ ମନେ ମନେ ଭାବନ୍ତି, ବୋହୂଟା କ'ଣ ତାଙ୍କ ମନକଥା ଟିକିଏ ହେଲେ ବୁଝୁନି । ଆରପାରିକୁ ଅପେକ୍ଷା କରି ବସିଲାବେଳେ, ନାତିନାତୁଣୀମାନଙ୍କ ସାଙ୍ଗରେ ଟିକିଏ ବସିପାରିଲେ ତାଙ୍କୁ ସ୍ୱର୍ଗସୁଖ ମିଳେ । ସେ ତ ଆଉ ପୁଅବୋହୂଙ୍କ ଧନରତ୍ନ, ଟଙ୍କାପଇସା ମାଗୁ ନାହାନ୍ତି ବରଂ ଘରେ ରହି ଗୃହଜମିରୁ ଯାହାକିଛି ପାଆନ୍ତି ପୁଅ ବୋହୂଙ୍କ ପାଇଁ ଲୋକ ଦେଇ ପଠାଇବାରେ ସେ କେବେହେଲେ ଅବହେଳା କରିନାହାନ୍ତି । ଅଭି କ'ଣ ଗଣ୍ଡେ ନା ପାଞ୍ଚଟା ଅଛନ୍ତି ଯେ, ସେ କାହାଘରେ ନେଇ ପୂରେଇ ଦେବେ !

ଛୁଟିରେ ଯେତେବେଳେ ନାତିନାତୁଣୀମାନେ ଗାଁକୁ ଆସନ୍ତି, ବୁଢ଼ୀ ଗୋଡ଼ ତଳେ ପଡ଼େନି । ଆଜି ପୋଖରୀରୁ ମାଛମରା ହେଲଣି ତ କାଲି ବଗିଚାରୁ ଫଳଫୁଲଗୁଡ଼ା ତୋଳା ହେଲଣି । ସବୁ ତ ତାଙ୍କରି ପାଇଁ । ମାତ୍ର ତାଙ୍କ ମନକଥା ବୁଝୁଛି କିଏ ? ଦଶହରା ଛୁଟିରେ ଚାରିଦିନ ଗାଁରେ ରହି, ବୋହୂ ଭୁବନେଶ୍ୱର ସହରକୁ ଫେରିଲାବେଳେ ଶାଶୁଙ୍କୁ କହିଥିଲେ ଯେ, ଏତେଗୁଡ଼ାଏ ଜମିବାଡ଼ି ଧରି ଗାଁରେ ରହି କିଛି ଲାଭ ନାହିଁ । ଠକେଇକି ମୂଲିଆ ମଜୁରିଆ ସବୁ ନେଉଛନ୍ତି । ଯଦି ସେ ରାଜି ହୁଅନ୍ତେ ତା'ହେଲେ ଗାଁ ଜମିବାଡ଼ି ବିକିଦେଇ ଗୋଟେ ବ୍ୟାଙ୍କରେ ଟଙ୍କା ଡିପୋଜିଟ୍ କରିଦେଲେ ସୁଧରୁ ତାଙ୍କର ବର୍ଷକର ଖର୍ଚ୍ଚ ବାହାରି ପଡ଼ନ୍ତା । ସେ ଭଲରେ ପୁରୀରେ ଘରଭଡ଼ା ନେଇ ବୁଢ଼ୀ ବୟସଟା କଟାଇ ପାରନ୍ତେ । ମଫସଲ ଜାଗାରେ ଏତେ ହନ୍ତସନ୍ତ ହୁଅନ୍ତେନି ।

ସୁର ଉପସ୍ଥିତିରେ ବୋହୂ ସବୁ ଯାହା କହିଗଲା, ସୁରବୋଉ ଶୁଣିଲେ । ପୁଅ ଆଡ଼େ ଚାହିଁଲେ । ସତେ ଯେପରି ପୁଅ ବୋହୂ କଥାକୁ ସମର୍ଥନ କରୁଛି ।

ଦୁଇ ଆଖିକୋଣରୁ ଝର ଆସୁଥିବା ଲୁହକୁ ସେମାନଙ୍କର ଅଜାଣତରେ ପୋଛିନେଇ ସୁରବୋଉ କହିଲେ "ହଉ-ମା, ମୁଁ ବା ଆଉ କେତେ ଦିନ ବଞ୍ଚିବି । ମୁଁ ମଲାପରେ ତୁମେ ଏ ଗାଁ ସମ୍ପତ୍ତି ବିକ ବା ରଖ ମୁଁ ତ ଆଉ ଦେଖିବାକୁ ଆସିବିନି । ମୋର ଏଇ ଭିଟାମାଟି ଉପରେ ପଡ଼ି ମୁଁ ମରିବି, ଯେଉଁଠି ମୋ ପୂର୍ବପୁରୁଷ ମରିଥିଲେ । ଏଇ ମାଟି ମୋର ସ୍ୱର୍ଗ । ଏଠୁ ଯାଇ ବିକେ ସହରରେ ଭଡ଼ାଘରେ ରହିବି—ତା' ହବନି ମା'··· । ସୁରଆଡ଼େ ଚାହିଁ କହିଲେ ଯାହା କରୁଛୁ କର । ବାପ ମଲାଣି ସାତବର୍ଷ ହେଲା । ଗାଁରେ କେତେ ଲୋକ କେତେ କଥା କହୁଛନ୍ତି । ଏଇ ବର୍ଷ ମାଘମାସ ତାଙ୍କ ଦେହାନ୍ତ ଦିନରେ ତାଙ୍କ ବାର୍ଷିକ ଶ୍ରାଦ୍ଧଟା ଦେଇଦେ, ପିତୃଋଣରୁ ମୁକ୍ତ ହୁଅ ।"

ଶାଶୁଙ୍କ ପାଟିରୁ କଥା ସରୁ ନସରୁ ପ୍ରଭାମୟୀ କହିଉଠିଲେ, ମାଘମାସରେ ପିଲାମାନଙ୍କ ପରୀକ୍ଷା ସମୟ । ସେଇ ସମୟରେ ସେ କିପରି ପିଲାଙ୍କୁ ଛାଡ଼ି ଆସିବେ ପିତୃଶ୍ରାଦ୍ଧ ଦେବାକୁ । ତା'ଛଡ଼ା ଶ୍ୱଶୁରଙ୍କ ଶ୍ରାଦ୍ଧ ତ ପ୍ରୟାଗରେ ଦିଆସରିଛି ଆଉ ଗୋଟେ ଗାଁରେ କରିବା କେବଳ ଲୋକଦେଖାଣିଆକୁ ଗୁଡ଼ାଏ ଖର୍ଚ୍ଚ କରିବା ଛଡ଼ା ଆଉ କଅଣ ହୋଇପାରେ ! ପ୍ରଭାମୟୀ ଶାଶୁଙ୍କ ମୁହଁ ଉପରେ ରୋକ୍‌ଠୋକ୍ ଜବାବ ଦେଇ ଘରୁ ପିଲାମାନଙ୍କୁ ଧରି ବାହାରିଗଲେ ।

ସୁରର ବଡ଼ଝିଅଟା ଜାଇମା'ଙ୍କୁ ଭାରି ଭଲପାଏ । ଜାଇମା'ର ମନକଥା ଆଉ କିଏ ବୁଝୁ ନବୁଝୁ ସେ ବୁଝେ । ସୁରବୋଉଙ୍କ ଆଖିକୋଣରୁ ଝରି ଆସିଥିବା ଲୁହ ଦି'ଟୋପା ବଡ଼ନାତୁଣୀ ଆଖିରେ ଧରାପଡ଼ିଯାଇଥିଲା । ସମସ୍ତେ ଗାଡ଼ିରେ ବସିଲେ । ଗାଡ଼ିରେ ବସିବା ପୂର୍ବରୁ ବଡ଼ନାତୁଣୀ ସୁରବୋଉଙ୍କ ପାଖକୁ ଲାଗିଆସି କହିଲା—'ଜାଇମା, ଜେଜେଙ୍କ ଶ୍ରାଦ୍ଧଦିନ ମୁଁ ନିଶ୍ଚୟ ଗାଁକୁ ଆସିବି ଏବଂ ତୋ ସାଙ୍ଗେ ରହିବି ।" ଗାଡ଼ିଭିତରୁ ପାଟିଶୁଣି ବଡ଼ନାତୁଣୀ ଗାଡ଼ିରେ ବସିଲା ।

ସୁରବୋଉ ଖୋଲା ଆକାଶ ଆଡ଼େ ମୁଣ୍ଡଉଠାଇ ଚାହିଁଲେ । ଗୋଧୂଳି ଆକାଶରେ ସନ୍ଧ୍ୟାତାରା ଗୋଟେ ଗୋଟେ ଦେଖା ଦେଲେଣି । ତାଙ୍କ ଆଖିଆଗରେ ସୁରନନାଙ୍କ ମୁହଁ ଭାସିଉଠିଲା । ସ୍ୱର୍ଗପୁରରେ ଥାଇ ସେ ଯେପରି ସୁରବୋଉଙ୍କୁ ପରିହାସ କରି କହୁଛନ୍ତି "ଦେଖିଲୁ ତ, କେତେଆଡ଼େ ମୋତେ ବୋହୂ ଖୋଜିବାକୁ ନ ବୁଲାଇଛୁ, ଏବେ ମୋ ଶ୍ରାଦ୍ଧ କରିବାକୁ ବୋହୂ ମନା କରିଦେଲା···ଆଉ ତୋ ପାଠୁଆ ବଡ଼ ଅଫିସର ପୁଅ ବୋହୂସାଙ୍ଗେ ଗାଡ଼ିରେ ବସି ଚାଲିଗଲା ।" ସୁରବୋଉଙ୍କ ମନରେ କୋହ ଉଠୁଥାଏ । ଅଶରୀର ସୁରନାନାଙ୍କ ଉଦ୍ଦେଶ୍ୟରେ ସୁରବୋଉଙ୍କର ଅବ୍ୟକ୍ତ ମନ ଭିତରୁ ବାହାରି ଆସୁଥିଲା "ନାନା, ସୁରନନା, ତୁମେ ସେମାନଙ୍କର ଅମଙ୍ଗଳ ଚିନ୍ତା କରନାହିଁ । ତୁମ ଶ୍ରାଦ୍ଧ ସେମାନେ ନକରନ୍ତୁ ।

ମୁଁ ଜାଣେ ସୁରର ବଡ଼ଝିଅ—ଝିଅ ନୁହଁ ପୁଅ । ସେ ତୁମ ପାଇଁ ସବୁ କରିବ ।"
ଅପେକ୍ଷା କର, ଆଉ କେତୋଟା ଦିନ ପରେ ମୁଁ ତୁମ ପାଖକୁ ଚାଲିଯିବି ।

ମାଘମାସ ଶୁକ୍ଳ ଦ୍ୱାଦଶୀ ସୁରନନାଙ୍କ ଶ୍ରାଦ୍ଧଦିନ । ସୁରବୋଉ ଅସୁସ୍ଥତା ଭିତରେ ସବୁ ଯୋଗାଡ଼ କରିଥିଲେ । ସୁରକୁ ଟେଲିଗ୍ରାମ କରିଥିଲେ ବୋହୂ ଆଉ ପିଲମାନଙ୍କୁ ଧରି ଦିନକ ଆଗରୁ ଗାଁକୁ ଆସିବାପାଇଁ । କେହି ଆସି ନଥିଲେ । ଶ୍ରାଦ୍ଧଦିନ ସକାଳୁ ସୁରବୋଉ ବାର୍ଦ୍ଧକ୍ୟ ଆଉ ଉତ୍ତେଜନାର ତାଡ଼ନାରେ ଭାଙ୍ଗି ପଡ଼ୁଥିଲେ । ତା'ରି ଭିତରେ ସେ ଦେଖୁଥିଲେ ସଜଫୁଟା କଇଁଫୁଲ ଭଳି ସରଳ ମୁହଁଟିଏ । ବଡ଼ନାତୁଣୀ ଗାଡ଼ିରେ ବସିବା ପୂର୍ବରୁ କହିଯାଇଥିଲା ସେ ନିଶ୍ଚୟ ଆସିବ ବୋଲି । ତାଙ୍କର କାହା ଉପରେ ବିଶ୍ୱାସ ନଥିଲା—କେବଳ ଥିଲା ତାରି ଉପରେ । ତା'ର କ'ଣ ଆଉ ପରୀକ୍ଷା ସରିନ ? ସେ ମନର ଉତ୍ତେଜନାକୁ ଚାପିଧରି ତାଙ୍କ ଶୋଇବାଘର କୋଣରେ ଥିବା କାଠସିନ୍ଦୁକ ଭିତରୁ ପୁରୁଣା ପେଡ଼ି ବାହାର କଲେ । ତାଙ୍କ ମାଆ, ସେ ପୁଅଣୀ ହୋଇ ଆସିଲାବେଳେ ଏଇ ପେଡ଼ି ଦେଇଥିଲେ । ତାରି ଭିତରେ ତାଙ୍କ ମା' ଦେଇଥିବା ମଗରମୁହାଁ ମଲ, ବଟଫଳ, ଗୋଡ଼ ଖଡ଼ୁ ଓ କେତେ ରୁପାଗହଣା । ବଡ଼ନାତୁଣୀ କେତେଥର ଏଇ ଗହଣା ପିନ୍ଧିବ ବୋଲି ଅଳି କରୁଥିଲା, ଏବେ ଫେସନ କୁଆଡ଼େ ହେଲାଣି । ଏ ତ ପୁରୁଣା ଗହଣା । ମନେ ମନେ ଭାବିଥିଲେ, ତା' ବାହାଘର ବେଳକୁ ତାକୁ ଏତକ ଉପହାର ଦେଇ ଚମକେଇ ଦେବେ । ମାଳିମୁଦି ସେମିତି ଚକ୍ ଚକ୍ କରି ରହିଛନ୍ତି ।

ଗହଣାପେଡ଼ି ଖୋଲି ଗୋଟିଏ ପରେ ଗୋଟିଏ ଗହଣା ଦେଖିଲାବେଳେ ତାଙ୍କ ଆଖିରେ ନାଚିଉଠିଲା ବଡ଼ନାତୁଣୀ ବୋହୂ ସାଜି ବାହାବେଦୀକୁ ଯିବା ପୂର୍ବରୁ ତା' ପାଖେ ଛଳଛଳ ଆଖିରେ ଠିଆ ହୋଇଛି । ଉତ୍ତେଜନାରେ ତାଙ୍କ ଦେହମୁଣ୍ଡ ଥରିଉଠିଲା । ତାଙ୍କ ପାଟିରୁ କଥା ବାହାରୁ ନଥାଏ ।

ଏତିକିବେଳେ ବାହାରେ ସୁରଙ୍କ ଗାଡ଼ି ଆସି ଠିଆହେଲା । ଗାଡ଼ି ଭିତରୁ ନାତୁଣୀ ଦଉଡ଼ି ଯାଇଥିଲା ଡାଡ଼ମା'ଙ୍କ ଶୋଇବା ଘରକୁ । ନାତୁଣୀକୁ ଦେଖି ସୁରବୋଉ ମଣିଷ ଚିହ୍ନିବାର ଆତ୍ମବିଶ୍ୱାସ ନେଇ ଉଠିପଡ଼ିଲେ । ସତେ ଯେପରି ତାଙ୍କ ଆତ୍ମବିଶ୍ୱାସର ସେ ଇଚ୍ଛା ପୂର୍ଣ୍ଣହୋଇଛି ।



# ପରମାର୍ଥୀ

ଭୁବନେଶ୍ୱର ସହରର ରାଜରାସ୍ତା କଡ଼ରେ ହରେକୃଷ୍ଣଙ୍କ ସଙ୍ଗେ ମୋର ବହୁବର୍ଷ ପରେ ହଠାତ୍ ଦେଖା ହୋଇଗଲା । ସେ ବୋଧେ ଅଫିସ୍‌ରୁ ଘରକୁ ଫେରୁଥିବା ବାଟରେ ଚାଲିପଥକୁ ଅବରୋଧ କରି ବସିଥିବା ଫୁଲଗଛ ବିକାଳିମାନଙ୍କ ପାଖରୁ 'ଗୋଲାପଚାରା' ମୂଲଚାଲ କରୁଥିଲେ । ପ୍ରାୟ କୋଡ଼ିଏ ବର୍ଷ ପରେ ତାଙ୍କ ସଙ୍ଗେ ଦେଖା । ଏଇ ସମୟ ଭିତରେ ହରେକୃଷ୍ଣଙ୍କ ଚେହେରାରେ ବେଶ୍ କିଛି ପରିବର୍ତ୍ତନ ଘଟିଯାଇଛି । ମୁଣ୍ଡର କେଶ ପ୍ରାୟ ଅଧାରୁ ଅଧିକ ଉପୁଡ଼ିଯାଇ ସାମନାପଟ ଚନ୍ଦା ହୋଇ ଚକ୍‌ଚକ୍ ଦିଶିଲାଣି । ବଞ୍ଚିଯାଇଥିବା ସ୍ୱଳ୍ପ କେତେକ କେଶଗୁଚ୍ଛ କାନ ଉପରେ ଆଉ ପଛପଟେ ଉଲ-ଉଣ୍ଡୁଳ ରୂପ ଧାରଣ କଲେଣି । ଦୁଇପାଖ ମୁହଁ ଉପରେ ନାକ ପାଖକୁ ଲାଗି ବୟସ ବୃଦ୍ଧିର ରେଖା ସ୍ପଷ୍ଟଭାବେ ବିଦ୍ୟମାନ । ଆଖି ତଳପଡ଼ାଗୁଡ଼ିକ ଫୁଲିଲା ଫୁଲିଲା ଦିଶିଲାଣି । ବୟସ ବୃଦ୍ଧି ସାଙ୍ଗକୁ ମେଦବୃଦ୍ଧି ଫଳରେ ହରେକୃଷ୍ଣଙ୍କ ପେଟଟି ବାହାରପଡ଼ିଆଏ । ଶାରୀରିକ ପରିବର୍ତ୍ତନ ସାଙ୍ଗକୁ ହରେକୃଷ୍ଣଙ୍କର ବେଶପୋଷାକରେ ମଧ୍ୟ ପରିବର୍ତ୍ତନ ଲକ୍ଷ୍ୟ କଲି । ସେ ସମୟର ଟେରିପ୍ୟାଣ୍ଟ ସାଙ୍ଗକୁ ପୁରା ହାତଥିବାବାଲା ସାର୍ଟ୍, ଅମ୍ବାସେଡ଼ର୍ ଫୁଲସୁଜ୍ ପରିବର୍ତ୍ତେ ସେ ପିନ୍ଧିଥିଲେ ଧୋତି, ସାର୍ଟ୍, ବେକରେ ତୁଳସୀମାଳୀ, ମୁଣ୍ଡରେ ଚିତା ଆଉ କାନ୍ଧରେ ପକାଇଥିଲେ ଚଦର । ଗୋଡ଼ରେ ଚପଲ ।

ଦିଲ୍ଲୀ-ଭୁବନେଶ୍ୱର ଫ୍ଲାଇଟ୍‌ରେ ଭୁବନେଶ୍ୱର ବିମାନ ବନ୍ଦରରେ ପହଞ୍ଚି ଟ୍ୟାକ୍‌ସିରେ ସହରକୁ ପ୍ରବେଶପଥରେ ସହରର ବିରାଟ ପରିବର୍ତ୍ତନ ମୋ ଆଖିକୁ ଦୁଇଦିନ ତଳେ ଛୁଇଁଥିଲା । ଏବେ ରାସ୍ତାକଡ଼ରେ ମୋର ଏକଦା ଟ୍ରେନିଂମେଟ୍ ହରେକୃଷ୍ଣଙ୍କ ଶାରୀରିକ ପରିବର୍ତ୍ତନ ତାଙ୍କୁ ଚିହ୍ନିବାରେ କିଛିଟା ସମୟ ପାଇଁ ବିଳମ୍ବ ଘଟାଇଥିଲା । ହରେକୃଷ୍ଣଙ୍କ ସଙ୍ଗେ ମୋର ଦେଖାହୁଏ—ହାଇଦ୍ରାବାଦ ଅଡ୍‌ମିନିଷ୍ଟ୍ରେଟିଭ୍ ଟ୍ରେନିଂ ସ୍କୁଲରେ । ସମୟ ୧୯୬୭ ମସିହା ମାର୍ଚ୍ଚ ମାସ । ଓ. ଏ. ଏସ୍. ଟ୍ରେନିଂ ନେବାପାଇଁ ଆମେ ଷୋଳଜଣ ଅଫିସର ସେ ବର୍ଷ ହାଇଦ୍ରାବାଦ ଯାଇଥାଉ । ହରେକୃଷ୍ଣ ସେଇ ଷୋଳକଲା ମଧ୍ୟରୁ ଗୋଟିଏ । ପରବର୍ତ୍ତୀ ସମୟରେ ମୋତେ ଓଡ଼ିଶା

ଛାଡ଼ି ସୁଦୂର ଦିଲ୍ଲୀନଗରୀରେ ରହିବାକୁ ପଡ଼ିଲା ଆଉ ହରେକୃଷ୍ଣ ରହିଲେ ଓଡ଼ିଶାରେ । ଓଡ଼ିଶାକୁ ଏଇ କୋଡ଼ିଏ ବର୍ଷ ମଧ୍ୟରେ ବହୁ କମ୍ ଥର ଆସିଥିଲି ମାତ୍ର ତାହା ଘରୋଇ କାର୍ଯ୍ୟନେଇ । ତାଙ୍କ ସଙ୍ଗେ ଆଗରୁ କେବେ ଦେଖା ହୋଇ-ନଥିଲା ।

ଗାଡ଼ିରୁ ଓହ୍ଲାଇ ପଛପଟୁ ତାଙ୍କ ପିଠିରେ ହାତମାରିଲା ପରେ ସେ ବୁଲିପଡ଼ି ମୋତେ କିଛି ସମୟ ପାଇଁ ଚାହିଁ କୁଣ୍ଢାଇପକାଇଲେ । ଚିହ୍ନି ପାରି କହିଲେ, ବୟସ ଗଡ଼ିଯାଇଥିଲେ ମଧ୍ୟ ମୋତେ ଚିହ୍ନିବାରେ ବିଶେଷ କିଛି ଅସୁବିଧା ହେଲିନି । ସ୍ୱଳ୍ପ କଥାବାର୍ତ୍ତା ପରେ, ତାଙ୍କର ବେଶପୋଷାକର ଏପରି ପରିବର୍ତ୍ତନ ସମ୍ବନ୍ଧରେ ଜିଜ୍ଞାସା କରିବା ପୂର୍ବରୁ, ହରେକୃଷ୍ଣ ମୋ ମନକଥାକୁ ପ୍ରକାଶ କରିବାକୁ ନଦେଇ କହିଥିଲେ ଯେ, ସେ ଜଣେ 'ପରମାର୍ଥୀ' । ଅଫିସ୍ କାର୍ଯ୍ୟପରେ ଈଶ୍ୱରଚିନ୍ତା, ଜପ, ଯୋଗ ଛଡ଼ା ଆଉ କିଛି ଭାବୁନାହାନ୍ତି । ପଞ୍ଚମକାର ତ ଛାଡ଼—ପରଚିନ୍ତା, ପରନିନ୍ଦା, ପରଶ୍ରୀକାତରତାଠାରୁ ସେ ବହୁଦୂରରେ; ଈଶ୍ୱର ହିଁ ଏକମାତ୍ର ଧ୍ୟାନ । ତାଙ୍କଠାରୁ ଏତକ ଶୁଣି ମୁଁ ହସିଦେଇ କଅଣ ଗୋଟେ କହିବାକୁ ଯିବାପୂର୍ବରୁ ସେ ମୋ ମୁହଁରୁ କଥାଟା ଛଡ଼େଇନେଇ କହିଲେ, "ସବୁବେଳେ ତୁମର ସେଇ ଥଟ୍ଟାଳିଆ କଥା ।" କଥାବାର୍ତ୍ତା ଭିତରେ ଆମେ ରାସ୍ତାକଡ଼ରେ ଠିଆ ହୋଇଥିବା ଗାଡ଼ିପାଖକୁ ଫେରିଲୁ । ସେ ମୋତେ ବଳେଇଦେଇ ଗୋଲ୍‌ପଗାର୍ ଆଣିବାକୁ ଫେରିଲେ । ମୁଁ ଆସିଲି ରାଜ୍ୟ-ଅତିଥିଭବନକୁ, ଯେଉଁଠି ମୁଁ ଦିନ କେତୋଟା ପାଇଁ ରହୁଥିଲି ।

ଫେରିଲାବାଟରେ ମୋର ଖାରକୁଦ ଟ୍ରେନିଂ ସ୍କୁଲକଥା ମନେପଡ଼ିଲା । ଟ୍ରେନିଂ ନେବାପାଇଁ ଯେଉଁଦିନ ଆମେ ସମସ୍ତେ ଏଇ ଟ୍ରେନିଂ ସ୍କୁଲର ପରିସର ମଧ୍ୟରେ ପହଞ୍ଚିଲୁ, ସେଇଦିନ ସନ୍ଧ୍ୟାର କଥା । ରାତିଟା ପାରହେଲେ ଟ୍ରେନିଂ ଆରମ୍ଭ । ଟ୍ରେନିଂ ପରେ ସମସ୍ତେ ଫେରିବେ ଡେପୁଟି-ମାଜିଷ୍ଟ୍ରେଟ୍ ହୋଇ । ଲୋକମାନଙ୍କର ସେବାପାଇଁ । ସନ୍ଧ୍ୟା ଆଠଟାବେଳକୁ ହରେକୃଷ୍ଣଙ୍କ କୋଠରିଟି ବେଶ୍ ସରଗରମ ହୋଇଉଠିଥିଲା । ଜଣକ ପରେ ଜଣେ ତାଙ୍କ ରୁମ୍ ଭିତରକୁ ପ୍ରବେଶ କରୁଥା'ନ୍ତି । ଖୋଲାହସ ସାଙ୍ଗକୁ ଡେପୁଟି କଲେକ୍ଟର ଆଉ ମାଜିଷ୍ଟ୍ରେଟ୍ ଚାକିରିର ଇତିହାସ, ପରମ୍ପରା, ପାୱାର୍, ମାନ, ସ୍ୱାଭିମାନ ଉପରେ ବିଭିନ୍ନ ମତବାଦୀମାନଙ୍କର ମତାମତ । ମଝିରେ ମଝିରେ କାଚଗ୍ଲାସ ଆଉ ପାଣିବୋତଲରୁ ପାଣି ଢାଳିବାର ଶବ୍ଦ । ମୋତେ ଡାକରା ଆସିଲା । ମୁଁ କିଛି ସମୟ ପରେ ତାଙ୍କ କୋଠରିର କବାଟ ଠେଲି ଭିତରକୁ ପଶିଥିଲି । ହରେକୃଷ୍ଣ ନିଜେ ନିଜର ପରିଚୟ ଦେବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କ ସହିତ ପରିଚୟ କରାଇ ଦେଇଥିଲେ । ରାଣୀ-ମହୁମାଛିକୁ ଘେରିବସିଲା ପରି ସମସ୍ତେ ଘେରିବସିଥାନ୍ତି ହରେକୃଷ୍ଣଙ୍କୁ । ସେ କହୁଥାନ୍ତି ମଣିଷକୁ ମଣିଷ କୁଆଡ଼େ ଠିକ୍‌ଭାବେ ଚିହ୍ନିବାକୁ ହେଲେ ମଣିଷ ମନଭିତରେ ଥିବା

ଇନଭିସନ୍‌ଟିକୁ ଛାଡ଼ିବାକୁ ପଡ଼ିଥାଏ । ଏଇ ଇନଭିସନ୍‌କୁ ଦୂରେଇଦେଲେ ମଣିଷ-ମଣିଷ ଭିତରେ ଘନିଷ୍ଠତା ବଢ଼େ । ବନ୍ଧୁତ୍ୱ ନିବିଡ଼ ହୁଏ । ଆଉ ଏଇ ଇନଭିସନ୍‌କୁ ଦୂରେଇ ଦେବାକୁ ହେଲେ ଗୋଟେ, ଦୁଇଟା ପେଗ୍ ସୋମରସର ଆବଶ୍ୟକତା ଅଛି । ଗୋଟେ ଦିଇଟା ପେଗ୍ ପିଇଲାପରେ ନିଜ ନିଜ ମଧ୍ୟରେ ଆନ୍ତରିକତା ବଢ଼ିଉଠେ । ପରଚିନ୍ତା, ଦୁଃଖ-ଯନ୍ତ୍ରଣା ଦୂରେଇଯାଏ । ସେଥିପାଇଁ କୁଆଡ଼େ ଇଂରେଜମାନେ ଏ ଦେଶକୁ ଶାସନ କଲାବେଳେ ପ୍ରତ୍ୟେକ ସହରରେ ଅଫିସର୍ କ୍ଲବ୍ ବସାଇଥିଲେ । ସେତେବେଳର ଡେପୁଟି କଲେକ୍ଟର, କଲେକ୍ଟର, ମାଜିଷ୍ଟ୍ରେଟ୍-ମାନେ ସମସ୍ତେ ଏଇ କ୍ଲବ୍‌କୁ ଯାଉଥିଲେ । ଅନ୍ୟମାନଙ୍କୁ ସେ କ୍ଲବ୍‌କୁ ପଶିବାକୁ ମନାଥିଲା । ସେଦିନ ସନ୍ଧ୍ୟାରେ ଆମେ କେତେଜଣ ହରେକୃଷ୍ଣଙ୍କ ପିଆଲାରୁ ଗୋଟେ ଗୋଟେ ପେଗ୍ ସୋମରସ ପିଇ ତାଙ୍କର ଅନ୍ତରଙ୍ଗ ବନ୍ଧୁ ହେବାପାଇଁ ଆଗେଇ ଯାଇଥିଲୁ ।

ପରଦିନ ଆମର ଟ୍ରେନିଂ ଆରମ୍ଭ ହେଲା । ଅଧ୍ୟକ୍ଷ ଥିଲେ ଜଣେ ପରମାର୍ଥୀ । ପରିବାରବର୍ଗଙ୍କୁ ସୁଦୂର ଦିଲ୍ଲୀନଗରୀରେ ଛାଡ଼ିଦେଇ ରହୁଥିଲେ ଏକାକୀ । ମଣିଷ ମର୍ତ୍ତ୍ୟପୃଷ୍ଠକୁ ଆସେ ଏକା, ଗଲାବେଳେ ଯାଏ ଏକା । ମିଥ୍ୟା, ମାୟାସଂସାରେ କିଏ ପୁତ୍ର, କିଏ ପତ୍ନୀ ? ମଲାବେଳକୁ ସଫାକନା ଖଣ୍ଡେ ଦେବେନି—ଏହାଥିଲା ତାଙ୍କର ଉକ୍ତି । ତେଣୁ ସରକାରୀ କାମ ସରିଲାପରେ ଅବଶିଷ୍ଟ ସମୟକୁ ସେ ତାଙ୍କର ଗୁରୁଭାଇମାନଙ୍କ ସଙ୍ଗେ ହରିକୀର୍ତ୍ତନ, ଭଜନ ମାଧ୍ୟମରେ କାଟୁଥିଲେ । ସନ୍ଧ୍ୟାପରେ ତାଙ୍କର ସରକାରୀ ବଙ୍ଗଳା ଖୋଳ, କରତାଳ, ଗିନି ଶବ୍ଦରେ ମୁଖରିତ ହୋଇ-ଉଠୁଥିଲା । ବେଳେବେଳେ ଟ୍ରେନିଂ ପାଇଁ ଆସିଥିବା ଅଫିସରମାନେ ମଧ୍ୟ ନିମନ୍ତ୍ରିତ ହୁଅନ୍ତି । ଅଧ୍ୟକ୍ଷ ମଦ, ମାଂସ କଥା ତ ଛାଡ଼ ପିଆଜ, ରସୁଣ ମଧ୍ୟ ଭକ୍ଷଣ କରୁନଥିଲେ । ଯେଉଁମାନେ 'ମଦ' ଖାଆନ୍ତି ବୋଲି ସେ ଶୁଣୁଥିଲେ, ସେମାନଙ୍କୁ ସେ ପାଖରେ ପୂରାଇବାକୁ ଘୃଣା କରୁଥିଲେ । ସେ କହୁଥିଲେ, କୀର୍ତ୍ତନ, ଭଜନ ପରେ ଦୁଇ, ତିନି ବାଜି ବ୍ରିଜ୍ ପକାଇଦେଲେ ମନରେ ଯେତେ ଆନନ୍ଦ ଜାତ ହୁଏ, କ୍ଲବ୍ ଫ୍ଲବ୍‌କୁ ଯାଇ ତାହା ମିଳିବନି । ପ୍ରଃମେ ପ୍ରଥମେ ଆମେମାନେ ଅଧ୍ୟକ୍ଷଙ୍କ ମନ ଜାଣିବା ପାଇଁ ସେ ଡାକନ୍ତୁ ବା ନଡାକନ୍ତୁ, ସନ୍ଧ୍ୟାବେଳକୁ ଶୁଭ୍ରବସ୍ତ୍ର ପରିଧାନ କରି ତାଙ୍କ ବାସଭବନ ଅଳଂକୃତ କରୁଥିଲୁ । କିଛିଦିନ ପରେ ଆମ ଭିତରୁ ଅର୍ଦ୍ଧାଧିକଙ୍କୁ ଅଧ୍ୟକ୍ଷ ମହାଶୟ ଗିନି ଧରେଇଲେ ଏବଂ ପ୍ରତ୍ୟେକଦିନ ସନ୍ଧ୍ୟାରେ ତାଙ୍କ ଗୃହରେ ପହଞ୍ଚିବା ପାଇଁ ଏକପ୍ରକାର ଆଦେଶ ମଧ୍ୟ ଦେଲେ । ସେ ସମୟର ହୀରାକୁଦ ପରି ଏକ ଶୁଷ୍କ ସ୍ଥାନରେ ପ୍ରତ୍ୟେକଦିନ ଟ୍ରେନିଂ ପରେ ସନ୍ଧ୍ୟାବେଳକୁ ଗିନିଧରି ହରିକୀର୍ତ୍ତନ କରିବାକୁ ମାଜିଷ୍ଟ୍ରେଟ୍ ଚାକିରିରେ ସଦ୍ୟ ପଦାର୍ପଣ କରିଥିବା ଆଉ ଅଳ୍ପଦିନ ପୂର୍ବରୁ ବିଶ୍ୱ-ବିଦ୍ୟାଳୟରୁ ବାହାରିଥିବା ନଲୀପିନ୍ଧା, ଲମ୍ବାକଲିଆ ଯୁବକଗୋଷ୍ଠୀ ଏପରି ଏକ

ମାନସିକ ପରିବର୍ତ୍ତନକୁ ମାନିବାକୁ ପ୍ରସ୍ତୁତ ନଥିଲେ । ତେଣୁ କିଛିଦିନ ପରେ ଆମମାନଙ୍କ ମଧ୍ୟରୁ କେତେକ ପେଟବ୍ୟଥା ଓ ଅନ୍ୟାନ୍ୟ ଶାରୀରିକ ଅସୁସ୍ଥତା ଇତ୍ୟାଦି ଦର୍ଶାଇ ସମ୍ବଲପୁର କିମ୍ବା ବୁର୍ଲାର ସିନେମାହଲ୍ ଆଡ଼େ ମୁହାଁଇଲୁ । କିନ୍ତୁ ହରେକୃଷ୍ଣଙ୍କ ପାଖେ ଏକ ପରିବର୍ତ୍ତନ ଲକ୍ଷ୍ୟ କରାଗଲା । ସେ ପ୍ରତ୍ୟେକଦିନ ସନ୍ଧ୍ୟାରେ କୀର୍ତ୍ତନ ଆସରରେ ଯୋଗଦେଲେ । ସଙ୍କୀର୍ତ୍ତନ ଗାଇଲେ, ଖୋଳ ବଜାଇ ଶିଖିଲେ । କିଛିଦିନ ପରେ ଗୁରୁଭାଇ-ଭଉଣୀଙ୍କ ସଙ୍ଗେ ଆଖିବୁଜି "ନିତାଇ ଗୌର" ଭଜନ ଗାଇଲାବେଳେ ହରେକୃଷ୍ଣଙ୍କ ଆତ୍ମବିସ୍ମୃତ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଲା । ଏତେଦିନ ପରେ ଅଧ୍ୟକ୍ଷ ମହାଶୟ ଜଣେ ଅତି ନିଷ୍ଠାପର ଶିଷ୍ୟଙ୍କୁ ପାଇଥିବା ଯୋଗୁଁ ତାଙ୍କ କ୍ଲାସ ଆରମ୍ଭରୁ, ପୂର୍ବେ ବନ୍ୟାଶ୍ରମରେ ମହର୍ଷିମାନେ କିପରି ସେମାନଙ୍କ ଶିଷ୍ୟମାନଙ୍କୁ ସବୁ ବିଦ୍ୟାରେ ନିପୁଣତା ହାସଲ ପାଇଁ ଶିକ୍ଷା ପ୍ରଦାନ କରୁଥିଲେ, ସେ ବିଷୟରେ ବର୍ଣ୍ଣନା କରନ୍ତି । ସେ ଏ ସମସ୍ତ କହିଲାବେଳେ ମନେହୁଏ, ସତେ ଯେପରି ସେ ଆମମାନଙ୍କ ପାଇଁ ବିଶ୍ୱାମିତ୍ର କିମ୍ବା ବଶିଷ୍ଠ ସାଜିଛନ୍ତି ଆଉ ହରେକୃଷ୍ଣ ରାମଙ୍କ ସ୍ଥାନ ଅଧିକାର କରିଛନ୍ତି । ଆମେ କେତେଜଣ ପଛ ବେଞ୍ଚରେ ବସି ହାଇମାରିଲାବେଳେ, ସେ ହରେକୃଷ୍ଣଙ୍କ ଉଦାହରଣ ଦେଇ ଆମ ନୈତିକ ମାନଦଣ୍ଡକୁ ଆହୁରି ଉପରକୁ ଉଠାଇବାକୁ ଚାହାନ୍ତି । ଅଧ୍ୟକ୍ଷଙ୍କ ପ୍ରେରଣାରେ ହରେକୃଷ୍ଣ ଅଳ୍ପଦିନ ପରେ ମାଛ, ମାଂସ, ଅଣ୍ଡା, ରସୁଣ ଭକ୍ଷଣ ମଧ୍ୟ ଛାଡ଼ିଦେଲେ । ନିଜ କୋଠରି ମଧ୍ୟରେ ନିତାଇ-ଗୌରାଙ୍ଗଙ୍କ ଯୁଗଳ ଫଟୋକୁ ବନ୍ଧେଇ ଟଙ୍ଗାଇଲେ । ତାଙ୍କ ଖଟତଳେ ଆଗରୁ ଗଡ଼ୁଥିବା ଖାଲିବୋତଲଗୁଡ଼ାକ ଦିନ କେତେଟାରେ ଅଦୃଶ୍ୟ ହୋଇଗଲା । ହରେକୃଷ୍ଣ ଆମମାନଙ୍କୁ ଉପଦେଶ ଛଳରେ କହିଲେ, "ଭାଇ ! ସେଇ—'ଇନଭିଜନ୍' । ମାଜିଷ୍ଟ୍ରେଟ୍ ବୋଲି ଆମ ମନ ମଧ୍ୟରେ ଯେଉଁ ଆତ୍ମଗର୍ବ ଭରିରହିଛି, ତାକୁ ଛାଡ଼ି ସାଧାରଣ ମଣିଷଙ୍କ ସଙ୍ଗେ ମିଶି, ସେମାନଙ୍କ ପାଖରେ ବସ । ତାଙ୍କ ମନକଥା ବୁଝ । ସେମାନଙ୍କ ପାଖକୁ ଯିବାପାଇଁ, ସାଙ୍ଗରେ ବସିବାପାଇଁ, ତଳେ ପତ୍ରପକାଇ ଏକା ପଙ୍ଗତରେ ଭୋଜନ କରିବାପାଇଁ ଯେଉଁ 'ଇନଭିଜନ୍' ମନରେ ରହିଛି, ତାକୁ ପରିତ୍ୟାଗ କରିବାକୁ ହେଲେ କୀର୍ତ୍ତନହିଁ ଏକମାତ୍ର ମାଧ୍ୟମ । କୃଷ୍ଣ-ରସାମୃତ ପାନକଲାବେଳେ ମାଜିଷ୍ଟ୍ରେଟ୍-ପିଅନ ମଧ୍ୟରେ ପାର୍ଥକ୍ୟ କିଛି ନଥାଏ । ସମସ୍ତେ ଏକ ଈଶ୍ୱରଙ୍କ ସନ୍ତାନ ।"

ଦିନେ ହରେକୃଷ୍ଣଙ୍କ ଅନୁରୋଧ ଏବଂ ଅଧ୍ୟକ୍ଷ ମହାଶୟଙ୍କ ପ୍ରେରଣାରେ ଅଫିସର ମେସରେ ମିଟିଂ ବସିଲା । ଅଧ୍ୟକ୍ଷ ମହାଶୟ ସଭାପତିତ୍ୱ କଲେ । ହରେକୃଷ୍ଣ ସଭା କାର୍ଯ୍ୟକ୍ରମ ସୂଚୀ ଅନୁସାରେ ପ୍ରଥମେ ସ୍ୱାଗତ ଭାଷଣ ଛଳରେ ଗୋଟିଏ କ୍ଷୁଦ୍ର ଅଥଚ ସାରଗର୍ଭକ ତାତ୍ତ୍ୱିକ ଭାଷଣ ଦେଇ ଅଧ୍ୟକ୍ଷ ମହାଶୟଙ୍କୁ "ବ୍ୟୁରୋକ୍ରାସୀରେ ସ୍ଖଳନ" ଉପରେ କହିବାକୁ ଅନୁରୋଧ କଲେ । ଅଧ୍ୟକ୍ଷ ଅଧୁନା ବ୍ୟୁରୋକ୍ରାଟ୍‌ମାନଙ୍କର

କପରି ନୈତିକ ସ୍ଖଳନ ଘଟିଛି, ସେମାନେ କପରି ଲୋକମାନଙ୍କ ସେବା ନକରି ଲୋକ-ପ୍ରତିନିଧିମାନଙ୍କ ସେବାକରି ଗଣେଶଙ୍କ ମହାଦେବଙ୍କ ଗୃହପଟେ ପ୍ରଦକ୍ଷିଣ ବିଦ୍ୟା ଶିକ୍ଷା କରିଛନ୍ତି, ସେଇ ବିଷୟରେ ସାରଗର୍ଭକ ଭାଷଣ ଦେଲେ । ଏହା ମଧ୍ୟ ଟ୍ରେନିଂର ଏକ ଅଙ୍ଗ ବୋଲି କହିବାକୁ ଭୁଲି ନଥିଲେ । ତାଙ୍କ ଭାଷଣ ଶେଷ ହେବା ପୂର୍ବରୁ ସେ ଗୋଟିଏ ପ୍ରସ୍ତାବ ଦେଲେ । ସେ ପ୍ରସ୍ତାବଟି ହେଲା—ଲୋକମାନଙ୍କର ମଙ୍ଗଳ ଲାଗି ଏବଂ ଦେଶର ଭାବୀ ବ୍ୟୁରୋକ୍ରାଟମାନଙ୍କ ଚରିତ୍ରଶୋଧନ ପାଇଁ ଗୋଟିଏ ସଂସ୍ଥା ଗଢ଼ାଯିବ । ହରେକୃଷ୍ଣ ସଙ୍ଗେ ସଙ୍ଗେ ତାଙ୍କ ପ୍ରସ୍ତାବକୁ ସମର୍ଥନ କରି ତାଳି ଦେଲେ । ପଛପଟରୁ ଆମେମାନେ ସମସ୍ତେ ଟେବୁଲ୍‌ରେ ହାତପିଟି ସମର୍ଥନ ଜଣାଇଲୁ । ଅଧ୍ୟକ୍ଷ ମହାଶୟ ତାଙ୍କର ସୁଚିନ୍ତିତ ସଂସ୍ଥାଟିର ନାମ ଆମ ଆଗରେ ପେଶ୍ କଲେ । ସେଇ ସଂସ୍ଥାର ନାମ ହେଲା—"ସ୍ୱାଧୀନ କସମୋପଲିଟାନ୍ କଲଚରାଲ୍ ସୋସାଇଟି ଫର୍ ଦ ଇଣ୍ଟିଗ୍ରେଟେଡ୍ ହ୍ୟୁମାନ ଡେଭ୍‌ଲପମେଣ୍ଟ ।" ଏତେ ବଡ଼ ନାଁ ରଖିବାର ଉଦ୍ଦେଶ୍ୟ, ଏହି ସଂସ୍ଥାର ନିୟମାବଳୀ ବିଷୟରେ ମଧ୍ୟ ଆଲୋଚନା ହେଲା । ସେଇଦିନ ଶୁଭସନ୍ଧ୍ୟାରେ ଏହିପରି ଏକ ଚରିତ୍ରଶୋଧନ, ଜନସେବାକାରୀ ସଂସ୍ଥା ଜନ୍ମ ନେଲା । ଏହାର ମୁଖ୍ୟ ସଂଯୋଜକ ହେଲେ ହରେକୃଷ୍ଣ, ଅଧ୍ୟକ୍ଷ ସଭାପତି, ଆମେ ଷୋଳଜଣ ସକ୍ରିୟ ସଭ୍ୟ । ସଂସ୍ଥା ତରଫରୁ ପ୍ରତ୍ୟେକ ଶୁକ୍ରବାର ଦିନ ସନ୍ଧ୍ୟାରେ ଆମ ଅଫିସରସ୍ ମେସ୍‌ର ଡାଇନିଂ ହଲ୍ କମ୍ବା ଟ୍ରେନିଂ ଅନୁଷ୍ଠାନର ଲେକ୍‌ଚର ଥିଏଟରରେ ସଭାକାର୍ଯ୍ୟ ଅନୁଷ୍ଠିତ ହେବ । ଏହି ସଭାକୁ ଜାତି, ଧର୍ମ ନିର୍ବିଶେଷରେ ଶ୍ରୋତା, ବକ୍ତା ନିମନ୍ତ୍ରିତ ହେବେ । ପ୍ରତ୍ୟେକ ଶୁକ୍ରବାର ସନ୍ଧ୍ୟାପାଇଁ ଜଣେ ଜଣେ ବକ୍ତା ଭିନ୍ନ ଧର୍ମର ନିମନ୍ତ୍ରିତ ହେବେ ଏବଂ ସଭାଶେଷ ପରେ କୀର୍ତ୍ତନ, ଭଜନ, ପ୍ରସାଦ ସେବନର ମଧ୍ୟ ବନ୍ଦୋବସ୍ତ କରାହେବ ।

ବର୍ତ୍ତମାନ ସରକାର ଯିନା ପରିବେଶ ପ୍ରଦୂଷଣ ବିଷୟରେ ଚିନ୍ତା କରୁଛନ୍ତି, ମାତ୍ର ଆମର ଅଧ୍ୟକ୍ଷ ମହାଶୟ ସେ ସମୟରୁ ପରିବେଶ ପ୍ରଦୂଷଣ ବିଷୟରେ ଆମକୁ କହିଥିଲେ । ତାଙ୍କ ମତ ଅନୁସାରେ ଝାଞ୍ଜ, ମୃଦଙ୍ଗ, ଗିନି, ଘଣ୍ଟ ଇତ୍ୟାଦିସାଙ୍ଗକୁ ହରେକୃଷ୍ଣ ମହାମନ୍ତ୍ର ଗାନକଲେ ପରିବେଶ ସ୍ୱଚ୍ଛ ରହେ ।

ବିଭିନ୍ନ ରୋଗର ଜୀବାଣୁ , ଭୂତାଣୁମାନେ ଏଇ ଢୋଲଘାତରେ ମୃତ୍ୟୁବରଣ କରନ୍ତି । ସେଇଥିପାଇଁ ଆଗେ ଆମ ଗାଁ ଗଣ୍ଡାମାନଙ୍କରେ ହଇଜା, ବସନ୍ତ ପ୍ରଭୃତି ମହାମାରୀ ଲାଗିଲାବେଳେ ଗ୍ରାମବାସୀମାନେ ଦେବଦେବୀଙ୍କ ପାଖେ ସାତଦିନିଆ, ଏକୋଇଶଦିନିଆ ଅଖଣ୍ଡ ଅଷ୍ଟପ୍ରହରୀ କୀର୍ତ୍ତନ କରି ଏଇ ଜୀବାଣୁମାନଙ୍କୁ ଦୂରେଇ ଦେଉଥିଲେ । ବର୍ତ୍ତମାନର ଡାକ୍ତରମାନେ ଏ ସବୁକୁ ବିଶ୍ୱାସ କରୁନାହାନ୍ତି । ସେ ସମୟରେ ଆମର ଅଧ୍ୟକ୍ଷ ମହାଶୟ ଯାହା କହୁଥିଲେ, ତା'ର ସତ୍ୟତା ଏବେ

ପ୍ରମାଣିତ ହେବାକୁ ବସିଲଣି । ବର୍ତ୍ତମାନ ବ୍ୟୁରୋକ୍ରାସୀରେ ଯେଉଁପ୍ରକାର ଅଧଃପତନ ଦେଖାଦେଉଛନ୍ତି, ସବୁ ବ୍ୟୁରୋକ୍ରାଟ୍‌ମାନେ ଅନ୍ତତଃ ଦିନକୁ ଅଧଘଣ୍ଟାଏ କରି କୀର୍ତ୍ତନ-ଭଜନ ଯଦି କରନ୍ତେ, ସେମାନଙ୍କର ଚରିତ୍ର ଶୋଧନ ହୁଅନ୍ତା ।

ହୀରାକୁଦ କସ୍‌ମୋପଲିଟାନ୍ ସୋସାଇଟିର କେତୋଟି ଶୁକ୍ରବାର ସନ୍ଧ୍ୟା ଭଲ ଜମିଲା । ସଭା, ଭାଷଣ, ସଙ୍କୀର୍ତ୍ତନ, ପ୍ରବଚନ, ପ୍ରସାଦସେବନ ସାଙ୍ଗକୁ ସଙ୍ଗୀତ ପରିବେଷଣ ଇତ୍ୟାଦି କାର୍ଯ୍ୟକ୍ରମ ବେଶ୍ ଉତ୍ସାହଜନକ ହୋଇଥିଲା । ଏଇ ଅଳ୍ପ ସମୟ ମଧ୍ୟରେ ହରେକୃଷ୍ଣ କୋରାନ୍, ବାଇବେଲ୍‌ରୁ କେତେକ ପଙ୍‌କ୍ତି ମୁଖସ୍ଥ କରିନେଇଥାନ୍ତି । ତାଙ୍କର ସମ୍ପାଦକୀୟ ପ୍ରାରମ୍ଭିକ ଭାଷଣ ପ୍ରସଙ୍ଗରେ ସେ କୋରାନ୍, ବାଇବେଲ, ଭଗବତ୍ ଗୀତା, ଭାଗବତରୁ ମୁଖସ୍ଥ କରିଥିବା ପଙ୍‌କ୍ତି ଉଦ୍ଧାର କରି ଶୁକ୍ରବାର ସନ୍ଧ୍ୟାରେ ସମବେତ ଶ୍ରୋତା-ଭକ୍ତମାନଙ୍କୁ ସ୍ୱାଗତ ସମ୍ଭାଷଣ ଜଣାନ୍ତି । ଗୈରିକବସନ ସାଙ୍ଗକୁ ଯେଉଁମାନେ ତାଙ୍କର ପ୍ରବଚନ ଶୁଣୁଥିଲେ, ସେମାନେ ଭାବୁଥିଲେ—ହରେକୃଷ୍ଣଙ୍କ ଉପରେ ସ୍ୱାମୀ ବିବେକାନନ୍ଦଙ୍କ ଛାପ ପଡ଼ିଛି । ଅଧକ୍ଷ ମହାଶୟ ହୀରାକୁଦ କସ୍‌ମୋପଲିଟାନ କଲଚରାଲ୍ ସୋସାଇଟିର ସଫଳ କାର୍ଯ୍ୟକ୍ରମକୁ କେବଳ ଅଫିସର ମେସ୍ ପରିସର ମଧ୍ୟରେ ଆବଦ୍ଧ ନରଖି ବାହାରକୁ ସମ୍ପ୍ରସାରଣ କରିବା ପାଇଁ ମଧ୍ୟ ଇଚ୍ଛାପ୍ରକାଶ କଲେ । ତାଙ୍କର ଇଚ୍ଛା ଏବଂ ଆଦେଶ ଅନୁସାରେ ସମ୍ବଲପୁର ଶରଣାର୍ଥୀ କଲୋନୀରେ ଗୋଟିଏ ଶୁକ୍ରବାର ସନ୍ଧ୍ୟାରେ ଆୟୋଜନ ହରେକୃଷ୍ଣ କଲେ । ସ୍ୱତନ୍ତ୍ର ମିନିବସ୍‌ର ବ୍ୟବସ୍ଥାରେ ଆମେମାନେ ସମସ୍ତେ ନିମନ୍ତ୍ରିତ ହୋଇ ଗଲୁ । ସବୁ ଠିକ୍ ଚାଲିଲା । ମାତ୍ର ଶୁକ୍ରବାର ସନ୍ଧ୍ୟାର ସମସ୍ତ ଖର୍ଚ୍ଚ ଆମ ଷୋଳଜଣଙ୍କୁହିଁ ବହନ କରିବାକୁ ପଡ଼ିଲା । ଦରମାର ଦୁଇଗୁଣ ଖର୍ଚ୍ଚ । ଆସ୍ତେ ଆସ୍ତେ ସମସ୍ତେ ଦୂରେଇଗଲେ । ସପ୍ତାହର କାର୍ଯ୍ୟ ଧିମେଇ ଆସିଲା ବେଳକୁ ଆମ ଟ୍ରେନିଂ ସମାପ୍ତ ସମୟ ମଧ୍ୟ ଆସିଯାଇଥିଲା ।

ସେଦିନ ଥିଲା ହୀରାକୁଦ ଅଫିସର ମେସ୍ ଗୁରୁବାର ଶେଷ ରାତି । ଟ୍ରେନିଂ ସମାପ୍ତ ପରେ ସମସ୍ତେ ଘରକୁ ଫେରିବାପାଇଁ ବ୍ୟସ୍ତ । ସନ୍ଧ୍ୟା ହଉ ନହଉଣୁ କିଏ ବୁର୍ଲା ତ କିଏ ସମ୍ବଲପୁର ବଜାର ଆଡ଼େ ବାହାରି ଯାଇଥାନ୍ତି । ପ୍ରାୟ ରାତି ଆଠଟା ବେଳକୁ ମୁଁ ଆଉ ବନ୍ଧୁ ସୁବାସ ବୁର୍ଲାରୁ ଫେରିଲୁ ହୀରାକୁଦ । ମେସ୍‌ରେ ପହଞ୍ଚିଲା ବେଳକୁ ସବୁ ଶୂନ୍‌ଶାନ୍ । କେବଳ ହରେକୃଷ୍ଣଙ୍କ କୋଠରିରେ ଆଲୁଅ ଦିଶୁଥାଏ । କୋଠରିପାଖେ ପହଞ୍ଚି ଦେଖିଲୁ—ଦୁଆର ଭିତରୁ ପଟ୍ ବନ୍ଦ । ଘରେ କିଛି ଆବାଜ ଶୁଭୁନଥାଏ । ମନରେ ସନ୍ଦେହ ହେଲା । କଥା କଅଣ ଜାଣିବା ପାଇଁ ସୁବାସ ମୋ ରୁମ୍‌ରୁ ଗୋଟେ ଚେୟାର ଆଣି ତା' ଉପରେ ଠିଆହୋଇ ସ୍କାଇଲାଇଟ୍ ଦେଇ ଦେଖିଲା—ହରେକୃଷ୍ଣ ନିଜ ଖଟ ଉପରେ ଅର୍ଦ୍ଧଶାୟିତ ଅବସ୍ଥାରେ ହ୍ୱିସ୍କି ସାଙ୍ଗରେ

ସିଙ୍ଘା ଅଣ୍ଡା ଆଉ ଚେନାଚୂର ଉଦରସ୍ଥ କରିବାରେ ବ୍ୟସ୍ତ । ସୁବାସ ପ୍ରଥମେ ବିଶ୍ବାସ କରିପାରିଲି ନାହିଁ । ପରେ ପରେ ମୁଁ ମଧ୍ୟ ଚେୟାର ଉପରେ ଉଠି ଘରଭିତରେ ହରେକୃଷ୍ଣଙ୍କୁ ଦେଖିଲି । ତା'ପରେ ଶୃଙ୍ଖଳ ବାହାରପଟୁ ହରେକୃଷ୍ଣଙ୍କ କବାଟରେ ଆଘାତ । କିଛି ସମୟ ପରେ ସେ ନିଦରୁ ଉଠିଥିବାର ଅଭିନୟ କରି କବାଟ ଖୋଲିଲେ । ତାଙ୍କର ଅଭିନୟ ଆମକୁ ଜଣାଥିଲି । ଅଳ୍ପ ସମୟ ମଧ୍ୟରେ ତାଙ୍କ ଝଟିତିରୁ ଅ.ଉ ଟ୍ରଙ୍କ ମଧ୍ୟରୁ ପୁଲିସବାଲି ଗ୍ରେଶ ଜିନିଷ ଉଦ୍ଧାର କଲିଭଳି ବା ଇନ୍‌କମ୍‌ଟ୍ୟାକ୍‌ସବାଲି କଲା ଝଙ୍କା ବାହାର କଲିପରି ସବୁ ବାହାର କଲୁ । ସେଦିନ ହରେକୃଷ୍ଣ ବହୁତ କାକୁତିମିନତି ହୋଇଥିଲେ ଏବଂ ସେ କଥା ଯେପରି ଛ'କାନରୁ ଆଠ କାନ ନହୁଏ ଅମ୍ଭଙ୍କୁ ବହୁ ଅନୁରୋଧ କରି ଅସମାପ୍ତ ସମସ୍ତ ଖାଦ୍ୟପେୟ ଆମ ଉଦ୍ଦେଶ୍ୟରେ ସମର୍ପଣ କରିଥିଲେ ।

ହାଇସ୍କୁଲ ଛାଡ଼ିଲି ପରେ ମୁଁ ଓଡ଼ିଶା ଛାଡ଼ିଥିଲି । ବହୁ ବର୍ଷ ପରେ ହରେକୃଷ୍ଣଙ୍କ ସଙ୍ଗେ ଦେଖା ହୋଇଥିଲି ଭୁବନେଶ୍ବର ରାଜରାସ୍ତା କଡ଼ରେ । ସେତେବେଳେ ସେ ସେକ୍ରେଟାରିଏଟ୍‌ରେ ଡେପୁଟି ସେକ୍ରେଟାରୀ ଥା'ନ୍ତି । ତା'ପରେ ମୁଁ ଭୁବନେଶ୍ବରରୁ ଦିଲ୍ଲୀ ଫେରିଯାଇଥିଲି । ଇୟା ମଧ୍ୟରେ ଦୁଇବର୍ଷ ବିତି-ଯାଇଥିଲି । ହରେକୃଷ୍ଣଙ୍କ କଥା ବି ମୋ ମନରୁ ଲିଭିଯାଇଥିଲି ।

ହଠାତ୍ ପୁଣି ଗୋଟେ ସନ୍ଧ୍ୟାରେ ତାଙ୍କ ସହିତ ଦେଖାହୁଏ । ମୋର ବନ୍ଧୁ ଜଣେ ଆମେରିକାରୁ କିଛିଦିନ ପାଇଁ ଆସିଥାନ୍ତି । ଓଡ଼ିଶାକୁ ଯିବା ବାଟରେ ଦିଲ୍ଲୀରେ ଗୋଟେ ଦିନ କଟେଇବାକୁ ମନସ୍ଥ କରି ସନ୍ଧ୍ୟାବେଳକୁ ମୋତେ ତାଙ୍କ ହୋଟେଲ ରୁମ୍‌ରୁ ଫୋନ କରିଥିଲେ । ବହୁଦିନ ପରେ ଦେଖା; ଯଦିଓ ଚିଠିପତ୍ରର ଆଦାନ-ପ୍ରଦାନରେ ଠିକଣା ସମସ୍ତଙ୍କୁ ଜଣାଥିଲି । ସନ୍ଧ୍ୟାରେ ତାଙ୍କ ହୋଟେଲ ରୁମ୍‌ରେ ପହଞ୍ଚିଲି ପରେ ବନ୍ଧୁ କହିଲେ ରାତ୍ରିଭୋଜନ କରି ଫେରିବାକୁ । ରାତ୍ରିଭୋଜନ କରିବା ପାଇଁ ଆମେ ଦୁହେଁ ଯାଇଥିଲୁ ହୋଟେଲ 'ତାଜ'ର 'ଅଗଷ୍ଟମୁନ୍' ଗ୍ରଇଲ୍ ରେସ୍ତୋରାଁକୁ । ଗୋଟିଏ ଟେବୁଲର ଦୁଇପଟେ ଦୁଇଜଣ ବସିପାରିଲି ପରେ ବନ୍ଧୁ ଜଣକ 'ହଟଡ଼୍ରିଙ୍କ୍' ପାଇଁ ଅର୍ଡ଼ର ଦେଇ ସିଗାରେଟ ଧରାଇଲେ । ଏଇ ସମୟରେ ହଠାତ୍ ମୋର ନଜର ପଡ଼ିଲି ପାଖ ଟେବୁଲ୍ ଉପରକୁ । ଚିହ୍ନିଲି ଚିହ୍ନିଲି ମୁହଁ । ଭଦ୍ରଲୋକ ଜଣକ ମୋତେ ଦେଖି ରେସ୍ତୋରାଁର ପୀତ ଆଲୋକରେ ଓଠରେ ହସ ଖେଳାଇ ସାରିଲେଣି । ମୁଁ କିନ୍ତୁ ଠିକ୍ ଚିହ୍ନି ନପାରୁଥିବା ହେତୁ ଭଦ୍ରତା ଦୃଷ୍ଟିରୁ କିଛି କହିପାରୁ ନଥାଏ କି ହାତଟେକି ନମସ୍କାର କରିପାରୁ ନଥାଏ । ତାଙ୍କ ଟେବୁଲ ଉପରେ ହୋଟେଲ ବଏ ସ୍କଚ୍ ହ୍ବିସ୍କି ସାଙ୍ଗକୁ ବୋନ୍‌ଲେସ ଚିକେନ ଥୋଇଦେଇ ଗଲା । ମୁଁ ତଳ ଉପରକୁ ମୁହଁକଲି ସମୟ ଭିତରେ ସେ ଉଠି

ଆସିଲେ । ମୋ ଟେବୁଲ ପାଖେ ନଇଁପଡ଼ି କହିଲେ, "କିଓ ଚିହ୍ନି ପାରୁନ ?" ତାଙ୍କ କଥା ଶୁଣିଲା ପରେ ମୁଁ କହିଲି, "କିଏ ହରେକୃଷ୍ଣ !" ସେ କହିଲେ, "ହଁ ଭାଇ, ହରେକୃଷ୍ଣ ।" ସେ ତାଙ୍କ ଗ୍ଲାସ ଧରି ଆମ ଟେବୁଲରେ ବସିଲେ ।

ହରେକୃଷ୍ଣଙ୍କ ପୁଣି ପରିବର୍ତ୍ତନ । ମୁଣ୍ଡରେ ସୁନ୍ଦର ପରଚୁଲା । ଦେହରେ ସୁଟ୍ । ଟେବୁଲ ଉପରେ ସ୍କଚ୍ ହ୍ୱିସ୍କି । ଏ ସବୁ ଦେଖି ଦୁଇବର୍ଷ ତଳର ପରମାର୍ଥୀ ବେଶଧାରୀ ହରେକୃଷ୍ଣଙ୍କୁ ମୁଁ ବା କିମିତି ଚିହ୍ନନ୍ତି ? ମନଖୁସିରେ ସେଦିନ ରାତ୍ରିଭୋଜନ କଲୁ । ଭୁବନେଶ୍ୱରରୁ ଦିଲ୍ଲୀ ବିଷୟ—ନାନା ଆଲୋଚନା । ଆମେରିକାଫେରନ୍ତା ବନ୍ଧୁ ଜଣଙ୍କୁ ଟାକ୍ସିରେ ବସାଇ ତାଙ୍କୁ ହୋଟେଲରୁ ବିଦାୟ ଦେଲାପରେ ହରେକୃଷ୍ଣଙ୍କ ଶେଭର୍ ଟାକ୍ସିରେ ଆମେ ବସିଲୁ ।

ଟାକ୍ସିରେ ବସିଲା ପରେ ମୁଁ ହରେକୃଷ୍ଣଙ୍କୁ ପ୍ରଶ୍ନ କରିଥିଲି । ମୋ ମନର ସନ୍ଦେହ ଆଉ ପ୍ରଶ୍ନର ଗୁରୁତ୍ୱ ବୁଝି ହରେକୃଷ୍ଣ କହିଲେ, "ଭାଇ ! ମୋତେ ତୁମେ ଗୋଟେ ହିପୋକ୍ରାଟ୍ ବୋଲି କହିପାର । ହୀରାକୁଦ ଟ୍ରେନିଂ ସମୟରେ ଗିନିଧରି ଗୈରିକବସ୍ତ୍ର ପରିଧାନ କରିବା, ସେକ୍ରେଟାରିଏଟ୍‌ରେ ପରମାର୍ଥୀ ବେଶ ଆଉ ବର୍ତ୍ତମାନର ବେଶ ସବୁ ମୋ ହିପୋକ୍ରାସିର ପରିଚୟ । କିଏ ଜାଣୁ ନଜାଣୁ—ମାତ୍ର ତୁମେ ତ ସବୁ ଜାଣ । ବର୍ତ୍ତମାନ ଯୁଗଟି ଗୋଟିଏ ହିପୋକ୍ରାସିର ଯୁଗ । ନହେଲେ ଯେଉଁମାନେ ଦୁର୍ନୀତିଗ୍ରସ୍ତ, ଭ୍ରଷ୍ଟାଚାରୀ ସେମାନେ ଦୁର୍ନୀତି ନିବାରଣ ପାଇଁ ପାଟି ଫଟାଇ ଚିତ୍କାର କରନ୍ତେ କିପରି ? ଯେଉଁମାନେ କଳାବଜାରୀ, ଭ୍ରଷ୍ଟାଚାରୀ ସେମାନେ କିପରି ସମାଜର ମଣ୍ଡଳମଣି ସାଜନ୍ତେ ? ଆମେମାନେ ଲୋକମାନଙ୍କ ସେବା ନାଁରେ ଲୋକମାନଙ୍କର ତଣ୍ଟି ଚିପୁଥିବା ଲୋକଙ୍କର ସେବା କରୁଛେ—ତାଙ୍କ କଥାରେ ଉଠୁଛେ, ବସୁଛେ । ବର୍ତ୍ତମାନ ଯୁଗ ହେଲା ହିପୋକ୍ରାଟ୍-ମାନଙ୍କର ଯୁଗ । ତୁମେ ଯାହା ନୁହଁ, ତା' ଅଭିନୟ କର; କାରଣ ଏଠାରେ ସମସ୍ତେ ଭିନ୍ନ ମୁଖାପିନ୍ଧି ଅଭିନୟ କରୁଛନ୍ତି । ମୁଖାପିନ୍ଧା ଅଭିନୟକାରୀଙ୍କ ମଧ୍ୟରେ ଖୋଲା ମୁହଁବାଲା ହାସ୍ୟାସ୍ପଦ ହେବାଛଡ଼ା କଅଣ ହୋଇପାରେ ? ମୁଁ ହୀରାକୁଦରେ ଗିନି ଧରିଥିଲି । ଆମ ଅଧ୍ୟକ୍ଷ ସେକ୍ରେଟାରୀ ହୋଇଆସିଲା ପରେ ମୁଁ ଚାଳିଶି ଜଣଙ୍କୁ କଟାଇ ଉପରକୁ ଉଠିଲି । ଓଡ଼ିଶାର ବିଭିନ୍ନ ସ୍ଥାନ ବୁଲିଲା ପରେ ଠିକ୍ ପ୍ରମୋସନ ସମୟ ବେଳକୁ ପରମାର୍ଥୀ ସାଜିଲି । ସଚ୍ଚୋଟ, ଧାର୍ମିକ, କର୍ମଦକ୍ଷ ବୋଲି ପ୍ରଚାର କଲି । ଯେଉଁଠି ଯାହା ସେବା କରିବା କଥା, ଅଫିସ ସମୟ ପରେ ସେ ସେବା କରିବାରେ କାର୍ପଣ୍ୟ ଦେଖେଇନି । ସମସ୍ତଙ୍କୁ ସୁପରସିଡ୍ କରି ଆଇ. ଏ. ଏସ୍.କୁ ପ୍ରମୋସନ ପାଇ ବର୍ତ୍ତମାନ ସରକାରୀ ଉଦ୍ୟୋଗର ଏମ୍. ଡି. । କହ ମୋ ଚଲାପଥରେ ମୁଁ ତ ହାରିଯାଇନି । ସମସ୍ତଙ୍କୁ କଟେଇ ମାଡ଼ିଚାଲିଛି । ତୋ' ପରି

ତ ମନ୍ତ୍ରୀ, ଏମ୍. ଏଲ୍. ଏ.ଙ୍କ କଥା ନମାନି ନିଜର ଭିଟାମାଟି, ଗାଁ-ଗଣ୍ଡା, ବାପ-ମା'ଙ୍କୁ ଛାଡ଼ି ଶହ ଶହ ମାଇଲ ଦୂରରେ ପଡ଼ିଛି । ଯୁଗକୁ ଗୃହିଁ ବଞ୍ଚିବା । ଏଠି ମାନ, ଅଭିମାନ, ସ୍ୱାଭିମାନର ମୂଲ୍ୟ ନିରର୍ଥକ ।

କଥାବାର୍ତ୍ତା ଭିତରେ ଗାଡ଼ିଯାଇ ମୋ ଘରପାଖେ ପହଞ୍ଚିଗଲା । ମୁଁ ଗାଡ଼ିରୁ ବାହାରିଲି ବେଳେ ହରେକୃଷ୍ଣ କହିଲେ, "ଭାଇ ! ଭୁବନେଶ୍ୱର ଗଲେ ଆମ ଘରଆଡ଼େ ଆସିବୁ ।"



# ଅନ୍ଧଦେଶକୁ ଗଲି

ପୁଷ ମାସର ଅନ୍ଧୁଅନ୍ଧୁଆ ସକାଳ । ପାହାଡ଼ପର୍ବତଘେରା, ଆଦିବାସୀ ଅଞ୍ଚଳରେ ଏଇ କ୍ଷୁଦ୍ର ସହରରେ ପୁଷ ସକାଳର ଶୀତର ପ୍ରଭାବ ବେଶ୍ ଜଣା ପଡ଼ୁଥାଏ । ସହରପାଖ ପାହାଡ଼କାନ୍ଥି ଉପରକୁ ସେପର୍ଯ୍ୟନ୍ତ ସୂର୍ଯ୍ୟକିରଣ ଚଢ଼ିନଥାଏ । ଫାଟକ ପାଖେ ପହଞ୍ଚି ଶଙ୍କର ଦେଖିଲେ, ଜଣେ ଆଦିବାସୀ ଯୁବତୀ ଭୟ ଆଉ ସଂକୋଚରେ ତାଙ୍କ ଫାଟକ ପାଖକୁ ଲଗି ଠିଆହୋଇଛି । କେକରେ ଗୋଟିଏ ଲଙ୍ଗଳା ଛୁଆ, ଟିଏ ମୁକୁଳା ସ୍ତନରେ ମୁହଁଲଗାଇ କ୍ଷୀର ପିଉଥାଏ । ବୟସ ବାଇଶି କ ତେଇଶି ହେବ ।

ଅଭିଯୋଗ ଧରି ବହୁଲୋକ ଶଙ୍କର ପାଖକୁ ଦେଖାକରିବା ପାଇଁ ଆସନ୍ତି, ମାତ୍ର ଏତେ ପ୍ରତ୍ୟୁଷରୁ ତାଙ୍କୁ ଦେଖା କରିବାକୁ ଆସିବା ଏଇ ବୋଧେ ପ୍ରଥମ । ଶଙ୍କରଙ୍କୁ ପାଖେଇ ଆସିବାର ଦେଖି, ଯୁବତୀ ଜଣକ କେବଳ 'ବାବୁ' କହି ରହିଗଲା । ଆଖିରେ ଦୁଇଧାର ଲୁହ···ମନରେ ଭୟ । ଏଇବୋଧେ ପ୍ରଥମଥର ପାଇଁ ସେ ତା' ପାହାଡ଼ ଘର ଛାଡ଼ି ଜଣେ ସରକାରୀ ବାବୁ ପାଖକୁ ଆପତ୍ତି ଜଣାଇବା ପାଇଁ ଆସିଛି । କେଉଁ ଭାଷାରେ, ଆଉ କ ପ୍ରକାରେ ବାବୁଙ୍କୁ ତା' ଅଭିଯୋଗ ବାଢ଼ିବ, ସେହି ଦ୍ୱନ୍ଦ୍ୱରେ ପଡ଼ି କେବଳ 'ବାବୁ' କହି ସେ ଆଉ କିଛି କହିପାରି ନଥାଏ । ଶଙ୍କର ଫାଟକ ପାଖକୁ ଯାଇ ଠିଆହେଲା ବେଳକୁ, ଘର ଭିତରୁ ସ୍ତ୍ରୀ-ପ୍ରତିମା ମଧ୍ୟ ଫାଟକ ପାଖରେ ପହଞ୍ଚି ଯାଇଥିଲେ । ତାଙ୍କ କୋଳରେ ବର୍ଷକର ପୁଅ । ଯୁବତୀଟି ଫାଟକ ଆରପଟେ ପ୍ରତିମାକୁ ଦେଖି ବୋଧେ କଥା କହିବାର ସାହସ ପାଇଲା । ସେ ଅଶିଲା ଅଶିଲା କଣ୍ଠରେ ତା' ଭାଷାରେ କହିଲା ଯେ, ଗୁରୁବାର ତଳେ ସାହୁକାର ତା' ବରକୁ କାମ କରିବାପାଇଁ ଘରୁ ଡାକି ନେଇଥିଲା । ଉତ୍ତର ଧରି ନଫେରିଲାରୁ ସେ ସାହୁକାର ପାଖକୁ ଯାଇ ପଚାରି ଜାଣିଲା ଯେ ତା ବର ବିନା ଦୋଷରେ ଜେଲରେ ଅଛି । ସାହୁକାରକୁ ଯେତେ ପଚାରିଲା ସେ କିଛି କହିଲାନି । ତା' ଉପରକୁ ଦଶଟଙ୍କା ନୋଟ୍ ଖଣ୍ଡେ ଫୋପାଡ଼ ଦେଇ ଦାଣ୍ଡରୁ ବାହାର କରିଦେଲା । ଗାଁରେ ତା' କଥା କେହି ଶୁଣିଲେନି । ଶେଷକୁ ସେ ଆସିଛି ତାଙ୍କ ପାଖକୁ ଅଭିଯୋଗ ନେଇ ଯେ ତା' ବର ତ କିଛି ଦୋଷ କରିନି, ସେ କାହିଁକି ଜେଲ୍ ଭୋଗିବ ।

ଶଙ୍କର ସର୍ବଭାରତୀୟ ଆରକ୍ଷୀ ସେବାରେ ଯୋଗଦେଲା ପରେ, ଏଇ ତା'ର ପ୍ରଥମ ପୋଷ୍ଟିଂ । ସେ ସବ୍‌ଡିଭିଜନାଲ୍ ପୋଲିସ ଅଫିସର ଭାବେ ଅସିଥାଏ ଏଇ ଆଦିବାସୀ ଅଧ୍ୟୁଷିତ ସବ୍‌ଡିଭିଜନକୁ, ସାଙ୍ଗରେ ସ୍ତ୍ରୀ ପ୍ରତିମା ଓ ବର୍ଷକର ଗ୍ରେଷ୍ଟ ପୁଅ । ପାହାଡ଼ପର୍ବତଘେରା ଏଇ ଅଞ୍ଚଳଟି ତାକୁ ବେଶ୍ ଭଲ ଲାଗୁଥାଏ । ନିରୀହ, ସରଳ ଆଦିବାସୀମାନଙ୍କ ସଙ୍ଗେ ମିଶି ତାଙ୍କ କଥା ବୁଝିବା ପାଇଁ ଶଙ୍କର ସଦାସର୍ବଦା ଆଗ୍ରହୀ ଥିଲା ।

ଫାଟକ ପାଖରେ ଠିଆହୋଇ ଶଙ୍କର ଶୁଣିଥିଲା ନିରୀହା ଆଦିବାସୀ ଯୁବତୀର ଅଭିଯୋଗ । ତା' ମନ ଭିତରେ ଦ୍ୱନ୍ଦ୍ୱ ନଥିଲା, କଥା କହିବାରେ ଗୁଣ୍ଠୁଣ୍ଠି ନଥିଲା । ସରଳ ଭାଷାରେ ସେ ନ୍ୟାୟ ପାଇବା ପାଇଁ ଅନୁରୋଧ କରୁଥିଲା, ଏତିକି ଯେ, ତା' ସ୍ୱାମୀ ବିନା ଦୋଷରେ ଜେଲ୍ ଭୋଗୁଛି । ତା' କଥା କେହି ଶୁଣିଲେନି । ସେ ଆସିଛି ତା' ପାଖକୁ ନ୍ୟାୟ ପାଇବା ଆଶାରେ । ତା'ର ଗୋଟିଏ ସରଳ ପ୍ରଶ୍ନ—ତା' ବର ଜେଲ୍‌ରେ ରହିଲେ, ତା' ପିଲାକୁ ପୋଷିବ କିଏ ? କାହା ପାଖରେ ପିଲାକୁ ଛାଡ଼ି ସେ କାମ କରିବାକୁ ଯିବ ।

ଆଦିବାସୀ ଯୁବତୀର ମର୍ମସ୍ପର୍ଶୀ ଭାଷା ଶଙ୍କର ମନଭିତରେ ଆନ୍ଦୋଳନ ସୃଷ୍ଟି କରିଥିଲା । ସହାନୁଭୂତିର ସହ ଶୁଣିଲା ପରେ ଶଙ୍କର ତାକୁ ତିନିଦିନ ପରେ ଦେଖା କରିବାକୁ କହିଥିଲା । ତିନିଦିନ ଭିତରେ ସେ ସମସ୍ତ ବିଷୟ ତଦନ୍ତ କରିବେ । ଶଙ୍କରଠାରୁ ଶୁଣିଲା ପରେ, ଆଦିବାସୀ ଯୁବତୀ ଜଣକ ପ୍ରତିମାଙ୍କ କୋଳରେ ଥିବା ଗ୍ରେଷ୍ଟପୁଅଟି ଆଡ଼େ ଥରେ ଚାହିଁ ନିଜ ବେକରେ ମିଜାଲୁଗାରେ ଝୁଲାଇ ଥିବା ପୁଅଟି ଆଡ଼େ ଆଖିବୁଲେଇ ନେଇ ଫେରିଯାଇଥିଲା ପାହାଡ଼ ଉପର କନ୍ଧପଲ୍ଲୀକୁ । ଡଙ୍ଗର ବାଟଦେଇ ସେ ଗଲାପରେ ଶଙ୍କର ସ୍ତ୍ରୀ-ପ୍ରତିମାଙ୍କ ସହ ଫେରିଥିଲା ଘର ଭିତରକୁ ।

ଅଫିସକୁ ଆସିଲାପରେ ଶଙ୍କର ପୋଲିସ୍ ରେକର୍ଡ଼ ଖୋଜିଥିଲେ । ମାତ୍ର ଅମ୍ବଖୋଲ ଗାଁର 'ବନ୍ଧାଜାନି' କୌଣସି ପୋଲିସ୍ ମୋକଦ୍ଦମାରେ ଜଡ଼ିତ ହୋଇ ଜେଲ୍‌କୁ ଯିବାର ରେକର୍ଡ଼ ନଥିଲା । ଶେଷରେ ସେ ସବ୍‌ଜେଲର, ସହକାରୀ ଜେଲର ସାହେବଙ୍କୁ ଫୋନ୍ କରିଥିଲେ । ଜେଲର ସାହେବ ତାଙ୍କ ଜେଲ୍ ରେକର୍ଡ଼ ଦେଖି କହିଥିଲେ ଯେ ଗୁରିଦିନ ତଳେ ଦଶଜଣ ଆଦିବାସୀ ଲୋକ ବର୍ଷକ ତଳର ଗୋଟିଏ ମୋକଦ୍ଦମାରେ ଜଡ଼ିତ ହୋଇ କୋର୍ଟର ନିର୍ଦ୍ଦେଶରେ ଜେଲ୍‌କୁ ଆସିଛନ୍ତି । କିନ୍ତୁ ସେମାନଙ୍କ ମଧ୍ୟରେ 'ବନ୍ଧାଜାନି' ନାମକ କୌଣସି ବ୍ୟକ୍ତି ନାହାଁନ୍ତି । ଜେଲର୍ ସାହେବ ଜେଲ୍‌କୁ ଆସିଥିବା ଲୋକମାନଙ୍କର ନାଁ ପଢ଼ିଥିଲେ । ଟେଲିଫୋନ୍ ରଖି ଦେଲାପରେ ଶଙ୍କର ମନରେ ସନ୍ଦେହ ହେଲା । ଆଦିବାସୀ ଯୁବତୀ ଜଣକ

କ'ଣ ମିଛ କହିପାରେ ? ତା' ପକ୍ଷରେ ମିଛ କହିବାର ଦରକାର ବା କଅଣ ଥିଲା ! ସେ କେବଳ ଆପତ୍ତି କରୁଥିଲା ଯେ, ତା' ସ୍ୱାମୀ ଜେଲ୍‌ରେ ଅଛି ବିନା ଦୋଷରେ ।

ସନ୍ଦେହ ମନରେ ଶଙ୍କର ନିଜେ ଜେଲ୍‌କୁ ଯାଇ ଅ.ଉଥରେ ଭଲଭାବେ ଘଟଣାଟିକୁ ତଦନ୍ତ କରିବା ପାଇଁ ଜେଲ୍‌ରେ ପହଞ୍ଚି ଦେଖିଲେ ଯେ, ବର୍ଷକ ତଳେ ଗୋଟିଏ ଦଙ୍ଗାହାଙ୍ଗାମା ମୋକଦ୍ଦମାରେ ଅମ୍ବଖୋଲ ଗାଁର ଦଶଜଣ ଲୋକ କୋର୍ଟ ନିର୍ଦ୍ଦେଶରେ ଜେଲ୍‌କୁ ଆସିଛନ୍ତି । ତା'ର ଦିନେ ଦି'ଦିନ ପୂର୍ବରୁ କିମ୍ବା ପରେ କେହି ଜେଲ୍‌କୁ ଆସିବାର ରେକର୍ଡ଼ ନଥିଲା ।

ସେ ନିଜେ ଏଇ ଦଶଜଣ ଲୋକଙ୍କୁ ଦେଖିବା ପାଇଁ ଇଚ୍ଛାକଲେ । ସହକାରୀ ଜେଲରଙ୍କ ନିର୍ଦ୍ଦେଶରେ ବିଗ୍ୱରାଧୀନ କଏଦୀ ଶଙ୍କରଙ୍କ ପାଖକୁ ଆସିଥିଲେ । ଶଙ୍କର ସେମାନଙ୍କ ନାଁ ଜଣକପରେ ଜଣକର ପଗ୍ୱରୁଥାନ୍ତି···ପଦେଅଧେ କଥାପରେ ସେମାନେ ଫେରଯାଉଥାନ୍ତି । 'ଶୁକ୍ରାମୁଣ୍ଡା' ନାମକ କଏଦୀକୁ ପଗ୍ୱରିଲା ବେଳେ ସେ ତା'ର ନାଁ ବନ୍ଧା ବୋଲି କହିଲା । ଜେଲ୍ ରେକର୍ଡ଼ରେ ତା'ର ନାଁ ଶୁକ୍ର ଥାଏ । ବନ୍ଧା ନାଁଟି କହିଦେଲା ପରେ ଯୁବକ ଜଣକ ଭୟରେ ଥରିବାକୁ ଲାଗିଲା । ତା' ପାଟି ଝଳ ମାରିଗଲା । ସେ କଥାକହି ନପାରି କାନ୍ଥକୁ ଆଉଜି ଠିଆ ହୋଇଥିଲା ।

ଶଙ୍କରଙ୍କ ପ୍ରଶ୍ନର ଉତ୍ତର ଦେଇ ସେ ମାନିଥିଲା ଯେ, ତା'ର ପ୍ରକୃତ ନାଁ ବନ୍ଧାଜାନି । ତା' ନାଁ ଶୁକ୍ର ନୁହେଁ । ବର୍ଷକ ତଳେ ହାଟ ଉପରେ ଦୁଇ ସାହୁକାର 'କାହ୍ନୁଲ' କଣା ଉପରେ କଳିକଜିଆ କରି ଦୁଇପକ୍ଷର ଲୋକଙ୍କୁ ଧରି ଦଙ୍ଗାହାଙ୍ଗାମା କରିଥିଲେ । ତାଙ୍କ ଗାଁପାଖ ଦଳେ ଆଦିବାସୀ ଯୁବକ ଜଣେ ସାହୁକାରକୁ ସାହାଯ୍ୟ କରୁଥିଲାବେଳେ ତାଙ୍କ ଗାଁର କେତେଜଣ ପୁରୁଣା ସାହୁକାର ଦଣ୍ଡିଆ ସାହୁକାରକୁ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ । ସେମାନେ ଜାଣିଥିଲେ ଏଇ ସାହୁକାର-ଗୁଡ଼ାକ ତାଙ୍କ ଜିନିଷକୁ କମ୍ ପଇସାରେ କିଣିନିଅନ୍ତି । ସେମାନେ ଜାଣି ସୁଦ୍ଧା ତାଙ୍କୁ ହିଁ ଦେଇଥାନ୍ତି । ବର୍ଷ ବର୍ଷ ଧରି ସାହୁକାରର ବାପଅଜା ତାଙ୍କ ବାପଅଜାଙ୍କ ସଙ୍ଗେ ଚଳିଆସିଛନ୍ତି, ଏବେ କିପରି ସେମାନେ ସାହୁକାରକୁ ଛାଡ଼ିଦେବେ, ଆପଦ ବିପଦ ବେଳେ ସାହୁକାରହିଁ ତାଙ୍କ ପାଖରେ ଠିଆ ହୋଇଥାଏ । ଦୁଇ ସାହୁକାର କଳି ଯୋଗୁଁ ପୋଲିସ ଉଭୟପାର୍ଟିର ଲୋକଙ୍କୁ ଥାନାରେ ଦି'ଦିନ ରଖିଲା ପରେ, ସାହୁକାରମାନେ ବେଲ୍‌ରେ ସେମାନଙ୍କୁ ଆଣିଥିଲେ । ଯା' ମଧ୍ୟରେ ବର୍ଷେ ପାର ହୋଇଗଲା । କେସ୍ କଥା କିଏ କୁଆଡ଼େ ଭୁଲିଗଲେ । ପେଟପାଟଣା ପାଇଁ କେତେ ଲୋକ କେତେ ଆଡ଼େ ସଡ଼କ କାମ ପାଇଁ ଗ୍ୱଲିଗଲେ । ତାଙ୍କ ଗାଁର ଶୁକ୍ରାମୁଣ୍ଡା ଏଇ କେସ୍‌ରେ ଥିଲା । ବର୍ଷକ ତଳେ ସେ ସଡ଼କକାମ କରୁଥିବା କାନଟ୍ରାକ୍ଟ ସାଙ୍ଗେ ଗାଁଛାଡ଼ି ଗ୍ୱଲିଯାଇଥାଏ । ସିଏ କାନଟ୍ରାକ୍ଟିର ସେ ଥିଲା ଖାସ୍ ଲୋକ । ଖୁସି ହୋଇ ବାବୁ ତାକୁ ସାଙ୍ଗରେ ନେଇଯାଇଛି । ମଝିରେ ମଝିରେ ଗାଁକୁ ଆସେ ।

ବର୍ଷକ ପରେ ସେଇ ଦଙ୍ଗାହାଙ୍ଗାମା କେସ୍ କୋର୍ଟରେ ପଡ଼ିଲା । ମୁଦାଲି-ମାନଙ୍କୁ ହାଜର ହେବାକୁ କୋର୍ଟ ଅର୍ଡ଼ର ଦେଲା । କିନ୍ତୁ ଶୁଙ୍କାମୁଣ୍ଡା ନଥିବା ଯୋଗୁଁ ଜାମିନଦାର ସାହୁକାର ସମସ୍ତଙ୍କୁ କୋର୍ଟରେ ହାଜର କରିପାରୁ ନଥାଏ । ଥରକୁ ଥର ତାରିଖ ହେଲାପରେ ଶେଷଥର ପାଇଁ କୋର୍ଟ ସାହୁକାରକୁ ଆଦେଶ ଦେଇଥାଏ ଯେ, ସମସ୍ତ ମୁଦାଲିଙ୍କୁ ଜାମିନ୍‌ଦାରମାନେ ଯଦି କେହି ନ ପହଞ୍ଚାନ୍ତି, ତାହାହେଲେ ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ହେବ । ସାହୁକାର ଦଣ୍ଡିଆ ସାହୁ-ଶୁଙ୍କାକୁ ପାଇଲାନି । ଶେଷକୁ ଓକିଲଙ୍କ କଥାରେ ବଙ୍କା ପାଖରେ ପହଞ୍ଚିଲା । ବଙ୍କାକୁ ଫୁସୁଲା ଫୁସୁଲା କରି ୧୫ ଟଙ୍କା ଦେଲା, ପୁଣି ବଜାର ହୋଟେଲରେ ଭଲିଁ ଖାଇବା ପାଇଁ ଜବାବ୍ ଦେଇଥିଲା । ସାହୁକାର ତାକୁ କହିଥିଲା ଯେ, କୋର୍ଟରେ ଠିଆହୋଇ ଓକିଲବାବୁ ଯାହା କହିବେ, ମୁଣ୍ଡ ଟୁଙ୍ଗାରି ଦେବ । କିଛି କଥା କହିବାକୁ ପଡ଼ିବନି । ସାହୁକାର ତ କହୁଛି ? ଶୁଙ୍କା ନାହିଁ ବୋଲି ତା' ବଦଳରେ ସେ ଠିଆ ହୋଇଯିବ, ନହେଲେ ସାହୁକାରଟା ହଇରାଣ ହୋଇଯିବ । ସାହୁକାର କଥାରେ ସେ ରାଜି ହେଲା ।

ତାରିଖ ଦିନ ସାହୁକାର ସମସ୍ତଙ୍କୁ ନେଇ କୋର୍ଟରେ ହାଜର କଲା । ଜଣକ ପରେ ଜଣେ ମୁଦାଲିକୁ ସାହୁକାର ଓକିଲ ବିଚାରପତିଙ୍କ ଆଗରେ ହାଜର କରାଉଥାନ୍ତି । ବଙ୍କାର ପାଳି ପଡ଼ିଲା । କୋର୍ଟ ଭିତରେ ଜଜସାହେବଙ୍କୁ ଦେଖି ତା' ଗୋଡ଼ହାତ ହେମାଳ ହୋଇଉଠୁଥାଏ, ଜିଭ ଖିନ ମାରୁଥାଏ । ତାକୁ ଚହ୍ଲେଇ ଦେଇ ଓକିଲ କହିଲେ—'ହଜୁର ! ଏହେଲା ଶୁଙ୍କାମୁଣ୍ଡା···। ଓକିଲ୍ କଥାରେ ବଙ୍କା ମୁଣ୍ଡଟା ହଲେଇଦେଇ ସମସ୍ତଙ୍କ ସଙ୍ଗେ ମିଶି ଠିଆହେଲା । ବିଚାରପତି ସମସ୍ତ ମୁଦାଲିମାନେ ହାଜର ହେଲା ପରେ, ସମସ୍ତଙ୍କୁ ବିଚାର୍ ଶେଷରେ ଜେଲ୍ ହାଜତକୁ ପଠାଇଦେଲେ । ଓକିଲଙ୍କ କଥା ରହିଲାନି । 'ବଙ୍କାଜାନି' 'ଶୁଙ୍କା' ହୋଇ ହାତରେ ହାତକଡ଼ି ପିନ୍ଧି ଜେଲକୁ ଗଲା । ଗଲାବେଳେ ସାହୁକାର ଆଡ଼େ ଚାହିଁଥିଲା । ଦୂରରୁ ସାହୁକାର ହାତହଲେଇ ତାକୁ କଅଣ କହୁଥିଲା ସେ ଶୁଣିପାରିନଥିଲା ।

ଜେଲ୍‌ରୁ ପ୍ରକୃତ କଥା ବୁଝିଲା ପରେ, ଶଙ୍କର ସ୍ଥାନୀୟ ବିଚାରବିଭାଗୀୟ ମାଜିଷ୍ଟ୍ରେଟ୍‌ଙ୍କ ପାଖକୁ ତାଙ୍କ ତଦନ୍ତ ରିପୋର୍ଟ ପଠାଇ 'ବଙ୍କାଜାନି' ନିର୍ଦ୍ଦୋଷ ବ୍ୟକ୍ତି, ତାଙ୍କୁ ଛାଡ଼ି ଦେବାପାଇଁ ଅନୁରୋଧ କରିଥିଲେ ।

ତଦନ୍ତ ରିପୋର୍ଟ ଦେବାର ଅଳ୍ପଦିନ ପରେ ଶଙ୍କର ଅନ୍ୟତ୍ର ବଦଳି ହୋଇ-ଯାଇଥିଲେ । ତାଙ୍କ ତଦନ୍ତ ରିପୋର୍ଟରେ ଲେଖିଥିଲେ ଯେ, "ବଙ୍କା—ଅଶିକ୍ଷିତ, ଆଦିବାସୀ ଯୁବକ । ସାହୁକାରକୁ ସାହାଯ୍ୟ କରିବାପାଇଁ ଶିକ୍ଷିତ ଓକିଲଙ୍କ କଥାରେ

ମୁଣ୍ଡ଼ିଦଇ ଦସ୍ତଖତ ଦେଇଥିଲା । କୋର୍ଟକୁ ମିଥ୍ୟା କଥା ପ୍ରତାରଣା କରିବା ତା'ର ଉଦ୍ଦେଶ୍ୟ ନଥିଲା । ତେଣୁ ଯେଉଁ ଶିକ୍ଷିତ ଓକିଲ ଏପରି ଉଦ୍ଦେଶ୍ୟମୂଳକ କାର୍ଯ୍ୟକରି ନିର୍ଦ୍ଦୋଷ, ଅଶିକ୍ଷିତ ବ୍ୟକ୍ତିଙ୍କୁ ଜେଲ୍ ହାଜତକୁ ପଠାଇଛନ୍ତି, ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ହୋଇ ବନ୍ଧାକୁ ମୁକ୍ତ କରି ଦିଆଯାଉ ।''

ଏଥିଭିତରେ ଗୁରିବର୍ଷ ବିତିଯାଇଥିଲା । ଶଙ୍କର ସେଇ ଜିଲ୍ଲାକୁ ଏସ୍. ପି. ହୋଇ ଯାଇଥିଲେ । କାର୍ଯ୍ୟଭିତରେ ସେ ଦିନେ ବନ୍ଧା ଗାଁ ବାଟ ଦେଇ ଫେରିଥିଲେ । ଫେରିଲା ବାଟରେ ତାଙ୍କର ବନ୍ଧା କଥା ମନେପଡ଼ିଲା । ସେ ଗାଁଲୋକଙ୍କ ପାଖରୁ ତା' କଥା ପଗ୍ଚରିଥିଲେ ଏବଂ ଶୁଣିବାକୁ ପାଇଥିଲେ ପ୍ରାୟ ବର୍ଷକ ପୂର୍ବରୁ ବନ୍ଧାକୁ ବାଘ ଖାଇଗଲା । ବନ୍ଧାର ମୃତ୍ୟୁଖବର ଶୁଣି ତାଙ୍କ ଆଗରେ ସେଇ ଦିନ ଶୀତସକାଳର ଆଦିବାସୀ ଯୁବତୀର ମୁହଁ ଓ ଗ୍ଲେଟ ପିଲାଟିର କଥା ତାଙ୍କ ମନରେ ଭସିଉଠିଲା । ସେ ଇଚ୍ଛା କରିଥିଲେ ବନ୍ଧା ଘରକୁ ଯାଇ ତା' ସ୍ତ୍ରୀ ସଙ୍ଗେ ଦେଖା କରିବାକୁ । କାହାକୁ ସାଙ୍ଗରେ ନନେଇ ସେ ଗ୍ଚଲିଗ୍ଚଲି ପହଞ୍ଚିଥିଲେ ବନ୍ଧାର ଗ୍ଲେଟ ଖପରିଲ ଘରପାଖେ । ଗୋଟିଏ ଗୁରିବର୍ଷର ପିଲାଟିଏ ଘର ଆଗରେ ଲଙ୍ଗଳା ହୋଇ ଖେଳୁଥାଏ । ଗାଁ ଚଉକିଦାରର ପାଟି ଶୁଣି ବନ୍ଧାର ସ୍ତ୍ରୀ ଘରଭିତରୁ ବାହାରି ଆସିଲା । ସେମିତି ରୂପ, ବିଶେଷ କିଛି ପରିବର୍ତ୍ତନ ନାହିଁ । ସେ ମଧ୍ୟ ଶଙ୍କରଙ୍କୁ ଚିହ୍ନି ପାରିଥିଲା । ତାଙ୍କୁ ଦେଖି ଦେଖି ସେ ମୁହଁପୋତି ରହିଗଲା । ଶଙ୍କର ବନ୍ଧାର ମୃତ୍ୟୁ କଥା ତାକୁ ପଗ୍ଚରି ବି ପାରୁନଥାନ୍ତି । କି ଭାଷାରେ ତାକୁ ସେ ସହାନୁଭୂତି ଜଣାଇବେ, ସେଇ କଥା ଭାବୁଥିଲେ । କିଛି ସମୟ ପରେ, ସେ ବନ୍ଧାର ମୃତ୍ୟୁଖବର ପାଇ ବିଶେଷ ଦୁଃଖିତ ବୋଲି କହିବା ସଙ୍ଗେ ସଙ୍ଗେ ମୃତ୍ୟୁ ବିଷୟରେ ଜାଣିବାକୁ ଗ୍ଚହିଁଥିଲେ ।

ତାଙ୍କ କଥା ଶୁଣି ବନ୍ଧା ସ୍ତ୍ରୀ ମୁଣ୍ଡଟେକି ତାଙ୍କ ଆଡ଼େ ଗ୍ଚହିଁଥିଲା । ଯେପରି ବହୁଦିନ ପରେ ତା'ର କେହି ଜଣେ ନିଜର ଲୋକକୁ ସେ ଦେଖିଛି । ଗ୍ଲେଟ ପିଲାଟିକୁ ପାଖକୁ ନେଇ ସେ ଯାହା ସଂକ୍ଷେପରେ ଶଙ୍କର ଆଗେ କହିଥିଲା, ତାହାହେଲା— ଶଙ୍କରର ତଦନ୍ତ ରିପୋର୍ଟ ସବ୍‌ଡିଭିଜନାଲ ଜୁଡ଼ିସିଆଲ ମାଜିଷ୍ଟ୍ରେଟ୍ ପାଇଲା ପରେ 'ଶୁକ୍ରାମୁଣ୍ଡା' ମୋକଦ୍ଦମା ସମ୍ବନ୍ଧୀୟ କେସ୍ ରେକର୍ଡ ବାହାର କରିଥିଲେ । ଜେଲ୍‌ରୁ ବନ୍ଧାକୁ ତାଙ୍କ କୋର୍ଟକୁ ଡକାଯାଇଥିଲା । ମାଜିଷ୍ଟ୍ରେଟ୍ ନିଜେ 'ବନ୍ଧା'କୁ ପଗ୍ଚରିଥିଲେ ଯେ ପ୍ରକୃତରେ ସେ 'ଶୁକ୍ରା' ନା 'ବନ୍ଧା' । ବନ୍ଧା ମାଜିଷ୍ଟ୍ରେଟ୍‌ଙ୍କ ଆଗରେ ସତକଥା ମାନିଯାଇଥିଲା । ସାହୁକାର ତାକୁ ୧୫ ଟଙ୍କା ଦେଇ ଘରୁ ଡାକିଆଣିଥିଲେ । ଅଇଲାବେଳେ କହିଥିଲେ, ଶୁକ୍ରା ନଥିବା ଯୋଗୁଁ ତା' ସ୍ଥାନରେ ସେ ଗୋଟେ କାମ କରିଦେବ । ମଜୁରି ବାବଦକୁ ୧୫ ଟଙ୍କା ଦେବ, ହୋଟେଲରେ ଖାଇବାକୁ ଦେବ, କେବଳ ଘଣ୍ଟାକର କଥା । ବନ୍ଧା ତା'

କଥାରେ ଶଙ୍କାହେଲା । ସାହୁକାର ତାକୁ ଧରି ଓକିଲ ଘରକୁ ଆସିଥିଲେ । ଓକିଲ ତାକୁ କହିଲେ ଯେ, ସେ ଯେତେବେଳେ ମାଜିଷ୍ଟ୍ରେଟ୍‌ଙ୍କ ଆଗରେ ତାକୁ ଚାହିଁଲେ ଦେବେ, ସେ ମୁଣ୍ଡ ହଲେଇ ହଁ କରିଦେବ । ତାଙ୍କ କଥା ଅନୁସାରେ କୋର୍ଟରେ ଠିଆହୋଇ ସେ ସେଇ କଥା କରିଥିଲା । ଏତକ ଶୁଣିଲା ପରେ, ମାଜିଷ୍ଟ୍ରେଟ୍ ତାକୁ ସେ ମୋକଦ୍ଦମାରୁ ଛାଡ଼ କରିଦେଲେ । ମାତ୍ର ତା' ନାଁରେ ଆଉ ଗୋଟିଏ ମକଦ୍ଦମା ରୁଜୁକଲେ । ସେ କୋର୍ଟ ଆଗରେ ମିଥ୍ୟା ଚହ୍ନଟ ଦେଇଥିବା ଯୋଗୁଁ ତା' ନାଁରେ ଆଉ ଗୋଟିଏ ଦଫାରେ କେସ୍ ହେଲା । ସେକଥା ବି ସେ ଜାଣିନଥିଲା ।

ଜେଲ୍‌ରୁ ଖଲାସ୍ ହେଲାପରେ, ସେ ତା' ଘରେ ଆନନ୍ଦରେ କାମଦାମ କରି ଚଳୁଥିଲା । ମାତ୍ର ଛଅମାସ ପରେ ପୁଲିସବାଲାଏ ତାକୁ ପୁଣି ଖୋଜିବାକୁ ଲାଗିଲେ । ପୁଲିସ ଆଉ କୋର୍ଟ କଚେରି ନାଁ ଶୁଣି ବନ୍ଧା ପୁଲିସ ପାଖକୁ ଆସିବା ପାଇଁ ଡରିଲା । ଶେଷକୁ ଗାଁ ଲୋକଙ୍କ ପାଖରୁ ଶୁଣିଲା ଯେ, ତା' ନାଁରେ ଓ୍ୱାରେଣ୍ଟ୍ ବାହାରିଛି । ତାକୁ ପୁଲିସ ବାନ୍ଧି ନେଇ ପୁଣି ଜେଲ୍‌କୁ ପଠାଇ ଦେବ । ସେ ଜେଲ୍‌ରେ ରହିବ । ବନ୍ଧା କିଛି ବୁଝିପାରିଲା ନାହିଁ । ସେ ମନେ ମନେ ଭାବିଲା ତା ର ଦୋଷ କ'ଣ ? ସାହୁକାର ମଜୁରି ବାବଦକୁ ୧୫ ଟଙ୍କା ଦେଲା । ସେ ଯାଇ ଠିଆହେଲା । ଶିକ୍ଷିତ ଓକିଲବାବୁ ଯାହା କହିଲେ, ସେ ମୁଣ୍ଡ ହଲେଇ ସମ୍ମତି ଦେଲା । ଶେଷରେ ବିଗୃହକର୍ତ୍ତା ବିଗୃହ କରି ତାକୁ ଜେଲ୍‌କୁ ପଠାଇଦେଲେ । ଆଉ ଜଣଙ୍କ ରିପୋର୍ଟ ପରେ ସେ ନିର୍ଦୋଷ ବୋଲି ଛାଡ଼ିଦେଲେ, ତା'ପରେ ପୁଣି ତା' ନାଁରେ ଏଇ ମୋକଦ୍ଦମା, ପୁଲିସର ଦାଉ । ସେ କିଛି ଭାବିପାରିଲାନି ନ୍ୟାୟ କେଉଁଠି, ଅନ୍ୟାୟ କେଉଁଠି । କାହା ଆଗରେ ଆପତ୍ତି କରିବ ନ୍ୟାୟ ପାଇଁ, କିଏ ତାକୁ ସାହାଯ୍ୟ କରିବ । ଯେଉଁମାନେ ଶିକ୍ଷିତ, ସେମାନେ ତ ପ୍ରତାରକ ଭଳି ତା' ସଙ୍ଗେ କାମ କଲେ । ଯେଉଁମାନେ ବିଚାରକ ସେମାନେ ତାକୁ ପୁଣି ଦୋଷୀ ବୋଲି ଜେଲ୍‌କୁ ନେବାପାଇଁ ଓ୍ୱାରେଣ୍ଟ୍ ପଠେଇଲେଣି । ଓ୍ୱାରେଣ୍ଟ୍ ଜାରିକରିବା ନାଁରେ ତା'ର କୁକୁଡ଼ା, ମଦ୍ଦ, ବାଡ଼ିର ପନିପରିବା ସବୁ ସରିଲା । ସଭ୍ୟ ଜଗତର ସମସ୍ତ ଲୋକଙ୍କୁ ସେ ଇର୍ଷା ମଧ୍ୟରେ ଚହ୍ନିଯାଇଥିଲା ।

ପୋଲିସର ଦାଉ ସହିନପାରି ବନ୍ଧା ଜଙ୍ଗଲକୁ ଲୁଚି ପଳେଇଗଲା । ତା'ର ତଇଲା ଉପରେ ଜଙ୍ଗଲ । ଶାଳବଣ ଘେରା ବିସ୍ତୃତ ଜଙ୍ଗଲ । ବାଘ, ଭାଲୁ, ହରିଣ ଓ ମିରିଗର ଘର । ଏଇ ଜଙ୍ଗଲ ଭିତରେ ସେ ନିଜକୁ ବେଶ୍ ନିରାପଦ ମଣିଲା ।

ପ୍ରକୃତିର ନିୟମାନୁସାରେ ଏଠାକାର ବାସିନ୍ଦାମାନେ ଚଳନ୍ତି । ଖାଦ୍ୟ ଏବଂ ଖାଦକ ସମସ୍ତେ ଏକାଠି ଖାଇ କିଏ କାହାକୁ ପଛରୁ ଛୁରୀ ମାରନ୍ତିନି, ଗୋଟେ

କିଛି କହି ଆଉ ଗୋଟେ କଥା କରେନା । ଭୁଲେଇ ନେଇ ଜାଲରେ ପକାଇ ଦିଏନା । ବେଶ୍ ଏ ଜଙ୍ଗଲ ଶାନ୍ତ, ସରଳ, ସୁନ୍ଦର । ଘନଜଙ୍ଗଲର ଶାଳଗଛ ଡାଳ ଉପରେ କୁଡ଼ିଆ କରି ରହିଲି ବନ୍ଧା । ତା'ର ସ୍ତ୍ରୀ ତା' ପାଇଁ ଖାଇବା ନେଇ ଆସେ । ଦୁହେଁ ମିଶି ତଉଲ୍ରେ କାମ କରନ୍ତି । ସମସ୍ତ କଷ୍ଟାନ୍ତ । କାମ ସରିଲେ ତା' ସ୍ତ୍ରୀ ଫେରେ ଗାଁକୁ । ସେ ରହେ ଗଛ ଉପରେ, ଜଙ୍ଗଲ ଭିତରେ, କେବଳ ଏଇ ସଭ୍ୟ ସମାଜର ମଣିଷ ଭୟରେ; ଜଙ୍ଗଲର ବାଘ ଭାଲୁଙ୍କ ଭୟରେ ନୁହେଁ ।

ତଥାପି ପୋଲିସର ଖୋଜା ବନ୍ଦ ହେଲାନି, ବନ୍ଧା ଘରକୁ ପୁଲିସ ଅଧରାତିରେ ଆସି 'ରେଡ଼୍' କଲା । ତା' ସ୍ତ୍ରୀ ପିଲାଙ୍କୁ ଥାନାକୁ ଧରିନେଇ ଥାନା ବାରଣ୍ଡାରେ ବସାଇଲା । ତା'ଠାରୁ କଥା ଆଦାୟ ପାଇଁ ବହୁ ନିଷ୍ଠୁର ବ୍ୟବହାର କଲା । ଥାନାରୁ ଫେରି ବନ୍ଧା ସ୍ତ୍ରୀ ଯେତେବେଳେ ବନ୍ଧା ଆଗେ ସବୁକଥା କୁହେ; ବନ୍ଧା କେବଳ ବଣ, ଜଙ୍ଗଲର ଗଛପତ୍ର—ହରିଣ, ମିରିଗ, କୁଳୁକୁଳୁ ହୋଇ ବହି-ଯାଉଥିବା ପାହାଡ଼ିନାଳ ଆଡ଼େ ଚାହେଁ ।

ଦିନେ ବନ୍ଧାର ସ୍ତ୍ରୀ ଗାଁରେ କାନ୍ଦି କାନ୍ଦି ପହଞ୍ଚିଥିଲା । ସାଙ୍ଗରେ ବନ୍ଧା ପିନ୍ଧିଥିବା ଖଣ୍ଡେ ରକ୍ତଲଗା ଗାମୁଛା ସମସ୍ତଙ୍କୁ ଦେଖାଇ କହିଥିଲା ଯେ, ବନ୍ଧାକୁ ବାଘ ଟେକି ନେଇଛି । ତା' କଥାରେ ଗାଁର କେତେ ଲୋକ ଆସିଲେ । ଦେଖିଲେ ଗୋଟେ ଜାଗାରେ ରକ୍ତ ପଡ଼ିଛି, ଛିଣ୍ଡା ଗାମୁଛା ଖଣ୍ଡେ ପଡ଼ିଛି, ବଣଭୂଇଁରେ ବାଘ ଗୋଡ଼ଖୋଜର ଚିହ୍ନ । ଗାଁକୁ ଫେରି ସମସ୍ତେ ବନ୍ଧା ପାଇଁ ଶୁଙ୍ଖିହେଲେ । ବନ୍ଧା ମଲା ବୋଲି ଖବର ହେଲା । ଜନ୍ମମୃତ୍ୟୁ ଖବର ଚଉକିଦାର ରିପୋର୍ଟ ଥାନାରେ ଦେଲା । ଥାନାବାଲା ଅଦାଲତକୁ ରିପୋର୍ଟ ଦେଲେ ବନ୍ଧାକୁ ବାଘ ଖାଇଗଲା । ତା' ନାଁରେ ଝୁଲୁଥିବା ଓ୍ୱାରେଣ୍ଟ ଫେରସ୍ତ ହୋଇଗଲା । ବନ୍ଧା ନାଁରେ ଥିବା ମକଦ୍ଦମା ଫାଇଲ୍ ବନ୍ଦ୍ ହୋଇଗଲା । କିଛିଦିନ ପରେ ବନ୍ଧାର ସ୍ତ୍ରୀ ଜଙ୍ଗଲରେ ବନ୍ଧା କାନରେ ଗୁନ୍‌ଗୁନ୍ କରି କହିଥିଲା—ସମସ୍ତ ସଭ୍ୟ ଜଗତ ବିଶ୍ୱାସ କରିଛନ୍ତି ଯେ ତୁ ମରିଯାଇଛୁ, ତୋତେ ବାଘ ଖାଇଛି ।

ପୁଲିସି ବାବୁ ଆସିଥିଲେ । ତା' ଆଗରେ ଆମ କୁକୁଡ଼ାଛୁଆ ଦିଇଟା ତେଇଁ ତେଇଁ ବୁଲୁଥିଲେ । ବାବୁ ତାକୁ ନେଲାନି, ସେ କହିଥିଲା ତୋ ମକଦ୍ଦମା ସରିଯାଇଛି । ତୁ ମରିଯାଇଛୁ । ତା' କଥା ଶୁଣି ବନ୍ଧା ଆନନ୍ଦରେ ଫାଟିପଡ଼ିଲା । ସେ ମରିଯାଇଛି··· ସମସ୍ତେ ଜାଣିଛନ୍ତି ସେ ମରିଯାଇଛି···ଏ ଦେଶର ନ୍ୟାୟରେ ସେ ମରିଯାଇଛି— ଏହାଠାରୁ ବଳି ଶୁଭଖବର ତା' ପାଇଁ କ'ଣ ଥାଇପାରେ ?

●

# ବାଘ, ବାଘୁଣୀ ଓ ମୃଗଶାବକର କାହାଣୀ

ମୁଁ ଯେତେବେଳେ ନୂଆହୋଇ ସାଇକେଲ ଶିଖୁଥିଲି । ଖଣ୍ଡିଉଡ଼ା ଶିଖୁଥିବା ଚଢ଼େଇଛୁଆ ଡାଳରୁ ଡାଳକୁ ଉଡ଼ିଲାପରି, କାହାର ସାଇକେଲ ଖଣ୍ଡେ ହାତରେ ପଡ଼ିଲେ ଗୋଟେ ଚକର କାଟିଦେବାକୁ ମନ ଛନଛନ ହେଉଥିଲା । ହାଇସ୍କୁଲରେ ଦଶମ ଶ୍ରେଣୀରେ ପଢ଼ୁଥିଲାବେଳେ ମୋ' ସାଙ୍ଗ ନିତ୍ୟାନନ୍ଦର ଖଣ୍ଡେ ଧଡ଼ଧଡ଼ିଆ ପୁରୁଣା ର୍‌ଲେ ସାଇକେଲ ଥିଲା । ସ୍କୁଲଛୁଟି ହେଲାପରେ, ଖେଳପଡ଼ିଆ ଚାରିପଟ ତା' ସାଇକେଲରେ ଯେତେବେଳେ ଚାରିଚକର କାଟୁଥିଲି ସେତେବେଳର ଆନନ୍ଦ ଏବଂ ମନର ଉନ୍ମାଦନା ବର୍ତ୍ତମାନ ନିଜ ଶୀତତାପନିୟନ୍ତ୍ରିତ ଏ.ସି. ଗାଡ଼ି ଚଳାଇବା ସଙ୍ଗେ ତୁଳନାକଲେ ସେ ଆନନ୍ଦର କ୍ଷୁଦ୍ରାଂଶ ମଧ୍ୟ ମିଳେନି । ସେତେ-ବେଳେ ଆମ ଘରେ ମୋତେ ସାଇକେଲ ଖଣ୍ଡେ କିଣିଦେବା ପାଇଁ କେବେ ଚିନ୍ତା କରିନଥିଲେ । ତେଣୁ ସାଇକେଲ ଚଢ଼ିବାର ଆନନ୍ଦ କହିଲେ ନିତ୍ୟାନନ୍ଦର ପୁରୁଣା ସାଇକେଲ ଖଣ୍ଡିକ ।

ଶୀତଦିନିଆ ସକାଳ । ମାଘମାସ ବୋଧେ ହେବ । ନିଆଳୀ ହାଇସ୍କୁଲ ସାମ୍ନାରେ ସେତେବେଳେ ବିରାଟ ବାଲିକୁଦା । ଷାଣ୍ମାସିକ ପରୀକ୍ଷା ସରିଗଲାପରେ, ଶିକ୍ଷକମାନେ ସେଇ ବାଲିକୁଦା ଉପରେ ବସି ପରୀକ୍ଷାଖାତା ଦେଖନ୍ତି । ଅ.ମର ପାଠପଢ଼ା ନଥାଏ । ତେଣୁ ପ୍ରତ୍ୟେକ ଦିନ ଗୋଟିଏ ଗୋଟିଏ କ୍ଲାସର ପିଲାମିଶି ସେ କୁଦର ବାଲିକୁ କାଟି ସ୍କୁଲ ପଛପଟ ଖାଲରେ ପକାଇ ସାମ୍ନା ପଡ଼ିଆକୁ ସମତୁଲ କରୁଥିଲୁ । କ୍ଲାସ ଶିକ୍ଷକ ତା'ର ତଦାରଖ କରୁଥିଲେ । ଏଥିପାଇଁ ମଧ୍ୟ କ୍ଲାସ କ୍ଲାସ ମଧ୍ୟରେ ପ୍ରତିଯୋଗିତା । କିଏ କେତେ ବାଲିକାଟି ବୋହିନେଇ ପାରିବ । ଶନିବାରଦିନ ବାଲିବୁହା କାମ ଜୋର୍‌ସୋର୍‌ରେ ଚାଲେ । ପ୍ରାୟ ଦୁଇ ଦୁଇଟା କ୍ଲାସର ପିଲାମାନେ ବାଲିକଟା ଆଉ ବୁହାରେ ଭାଗ ନେଇଥାନ୍ତି ।

ଏମିତି ଗୋଟିଏ ବାଲିବୁହା ଶନିବାରିଆ, ଶୀତୁଆ ସକାଳେ, ମୋ' ସାଙ୍ଗ ନିତ୍ୟାନନ୍ଦ ତା' ବାପାଙ୍କ ନୂଆ ର୍‌ଲେ ସାଇକେଲ ଧରି ସ୍କୁଲ ପଡ଼ିଆରେ ପହଞ୍ଚିଥିଲା । ତା' ନୂଆ ସାଇକେଲ ଦେଖୁଦେଖୁ, ବାଲିବୁହା ଛାଡ଼ି ସ୍କୁଲ ପଛପଟ କିଆବାଡ଼ ପାଖେ ମୁଁ ପହଞ୍ଚିଥିଲି । ସେଦିନ ନିତ୍ୟାନନ୍ଦର ବାପା ନିଆଳୀ ଡାକ୍ତରଖାନାକୁ

ଆସିଥାନ୍ତି । ତାଙ୍କ ଗାଁରେ ଗଣ୍ଡଗୋଳ ଯୋଗୁଁ ତା' ବାପାଙ୍କ ମୁଣ୍ଡରେ ଆଘାତ ଲଗିଥାଏ । ଖଲିଲ୍ ମହାଜନଙ୍କ ମୁଣ୍ଡରେ ଆଘାତ ଲଗିବା କମ୍ କଥା ନୁହେଁ !

ନଆଲୀ, କଳାପାଖଣ, କାକଟପୁର, ନିମାପଡ଼ା ଅଞ୍ଚଳରେ ଖଲିଲ୍ ମହାଜନଙ୍କୁ ନଜାଣେ କିଏ ? ଚମଡ଼ା ବ୍ୟବସାୟୀ ହିସାବରେ ତାଙ୍କର ଚାରିଆଡ଼େ ନାଁ । ଗାଁରେ ଦି' ଦିଇଟା ଗୋଦାମ ଘର । ମାସକେ ଦି' ତିନିଥର କଟକକୁ ମାଲ ଯାଏ । ସେଇ ଖଲିଲ୍ ମହାଜନଙ୍କୁ ତାଙ୍କ ଭାଇଅଳି ମାଡ଼ ମାରିଥାନ୍ତି । ମାଡ଼ଟା ତାଙ୍କୁ ଯେତେ ଜୋର୍‌ରେ କାଟି ନଥିଲା, ତାଙ୍କ ଉପରକୁ ହାତ ଉଠାଇବାଟା ବେଶି କାଟିଥିଲା । ମୁଦାଲିମାନଙ୍କ ବିରୁଦ୍ଧରେ ଏତଲା ଦେଲାପରେ, ସେ ଆସିଲେ ଡାକ୍ତରଖାନାରେ ଭର୍ତ୍ତିହୋଇ ଚିକିତ୍ସା ହେବା ପାଇଁ । ଖଲିଲ୍ ମହାଜନଙ୍କ ପୁଅ ନିୟାମତ୍ । ତା'ର ମୋର ସଙ୍ଗାତ ବସିଥାଉ ।

ସାଙ୍ଗହୋଇ ଡାକ୍ତରଖାନା ଆସିଲୁ । ମହାଜନେ ଗୋଟେ ଖଟ ଉପରେ ଶୋଇଥାନ୍ତି । ଦେହରେ ସେପରି କିଛି ଆଘାତ ନଥିଲେ ମଧ୍ୟ ସେ ଡାକ୍ତରୀ ସାର୍ଟିଫିକେଟ୍ ହାସଲ କରିବାପାଇଁ ଚିକିତ୍ସାଧୀନ ଥିଲେ । ଖଲିଲ୍ ମହାଜନ ବଡ଼ ବଡ଼ ରାଜନୈତିକ ନେତାଙ୍କ ସଙ୍ଗେ ଜଣାଶୁଣା । ଭୋଟବେଳେ ଯେଉଁମାନେ ଆସନ୍ତି ତାଙ୍କ କଚେରି ଘରେ ରୁହନ୍ତି । ଏମିତି ଗୋଟେ ମାଡ଼ଫୌଜଦାରି ଘଟଣା ହେଲାପରେ, ଡାକ୍ତରଖାନାରେ ପଡ଼ି ମହାଜନେ ତାଙ୍କ ରାଜନୈତିକ ବନ୍ଧୁ, ସେତେବେଳର ମନ୍ତ୍ରୀଙ୍କ କଥା ମନେ ପକାଇଲେ । ମନ୍ତ୍ରୀଙ୍କୁ ଖବରଟା ଜଣେଇ ଥାନା ବଡ଼ବାବୁ ପାଖକୁ ବାର୍ତ୍ତା ଗୋଟେ କରିଦେଲେ ମୁଦାଲିଙ୍କ ଉପରେ ଆକ୍‌ସନ୍‌ଟା ଜୋର୍‌ରେ ହେବବୋଲି ଚିନ୍ତାକରି ସେ ତାଙ୍କ ପୁଅ ନିୟାମତ୍‌କୁ ଡକାଇଥିଲେ ।

ମନ୍ତ୍ରୀ ରୁହନ୍ତି ଭୁବନେଶ୍ୱରରେ । ଖଣ୍ଡେ ଚିଠିନେଇ ତାଙ୍କୁ ଯେକୌଣସି-ମତେ ଦେବାକୁ ହେବ । କଥାବାର୍ତ୍ତା ପରେ, ଚିଠିନେଇ ମନ୍ତ୍ରୀଙ୍କ ପାଖକୁ ଯିବା କାମଟା ମୋ ଉପରେ ପଡ଼ିଲା । କାରଣ ତାଙ୍କ ପୁଅ ଡାକ୍ତରଖାନାରେ ରହିବ । ମୋତେ ତାଙ୍କ ନୂଆ ରାଲେ ସାଇକେଲ ଧରି ଭୁବନେଶ୍ୱର ଯିବାକୁ ହେବ । ଏକଥା ଶୁଣିଲାପରେ, ମୋ ମନରେ ଯେଉଁ ଆନନ୍ଦ ସେକଥା ବର୍ତ୍ତମାନ ବର୍ଣ୍ଣନା କରିବା କଷ୍ଟ । କାଳବିଳମ୍ବ ନକରି, ଚିଠିଖଣ୍ଡିକ ଧରି ମୁଁ ସାଇକେଲ ଧରିଲି । ମୋ ପାଖେ ଥାଏ ଦୁଇଟଙ୍କା ଚାରିଅଣା, ସେତକ ପକେଟରେ ପୂରାଇ ରାଲେ ସାଇକେଲ ଧରି ନଆଲୀ ଛାଡ଼ିଲାବେଳକୁ ଦିନ ଦଶଟା ।

ଶୀତଦିନିଆ ଖରା । ନଆଲୀ, ଫୁଲନଖରା ରାସ୍ତା ସେତେବେଳେ ଯେ ଦେଖିଛି ଏବଂ ସେତେବେଳେ ଢଅସିଲ୍‌ଖୋଲ ବସ୍‌ରେ ସେ ରାସ୍ତାରେ ଯେ

ଯାଇଛୁ, ସାରାଜୀବନ ପାଇଁ ତା'ର ସେ ଯାତ୍ରା ଏକ ସ୍ମୃତି । ତେବେ ଗୁଲେ ସାଇକେଲ ହାତରେ ପଡ଼ିଲ ପରେ, ରାସ୍ତା ମୋତେ ଜଣାପଡ଼ୁନଥିଲ । ଫୁଲନଖରା ଦେଇ ଭୁବନେଶ୍ୱର ପହଞ୍ଚିଲ ବେଳକୁ ଦିନ ତିନିଟା ଉପରେ ହେଲଣି । ମନ୍ତ୍ରୀଙ୍କ ଘର ମୋତେ ଜଣାନଥାଏ । ଆଗରୁ ଥରେ ଦୁଇଥର ଭୁବନେଶ୍ୱର ଯାଇଥିଲ ମାତ୍ର ମନ୍ତ୍ରୀଙ୍କ ଘର ଜାଣିବା କିଛି ଦରକାର ନଥିଲ । ଏଣେ ସାଇକେଲ ଆସିବା ଆଶାରେ ମନ୍ତ୍ରୀଙ୍କ ଘର ଜାଣିଛି ବୋଲି ସମସ୍ତଙ୍କୁ କହୁଥାଏ । ଭୁବନେଶ୍ୱରର ବମିଖାଲ ପାର ହେଲପରେ ମନେପଡ଼ିଲ ଆମ ଗାଁ ବିନୋଦ କଥା । ସେ ଶିକ୍ଷକ ଗୁକିରି କରିଥାଏ ଏବଂ ତାଙ୍କ ବାପାଙ୍କ ପାଖରେ ଥାଏ । ବାଟ ପଗ୍ରୁରି ପଗ୍ରୁରି ଭୁବନେଶ୍ୱର ବିନୋଦ ଘରେ ପହଞ୍ଚିଲବେଳକୁ ଦିନ ଗୁରି । ବିନୋଦକୁ ସାଙ୍ଗରେ ଧରି ମନ୍ତ୍ରୀଙ୍କ ଘରଆଡ଼େ ଗୁଲିଲୁ । ଆଜିର ଏୟାର ଇଣ୍ଡିଆ ଅଫିସ୍ ସେତେବେଳେ ମନ୍ତ୍ରୀଙ୍କ ବାସଭବନ ଥାଏ ।

ଅତି ସନ୍ତର୍ପଣରେ ଗେଟ୍ ପାରହୋଇ ଭିତରକୁ ଗଲୁ । ପ୍ରାୟ ୧୦ । ୧୫ ଲୋକ ମନ୍ତ୍ରୀଙ୍କ ବାସଭବନ ପିଣ୍ଡା ଉପରେ ବସିଥାନ୍ତି । ସେମାନଙ୍କ ମଧ୍ୟରୁ ସମସ୍ତେ ପ୍ରାୟ ମଫସଲ ଲୋକ । ସାଙ୍ଗରେ ଜଣେ ଦି'ଜଣ ଖଦଡ଼ ପିନ୍ଧା ଧୋବଧାଉଳିଆ ଲୋକ ଥାଆନ୍ତି ।

ବିନୋଦ ଓ ମୁଁ ଯାଇ ସେମାନଙ୍କ ସାଙ୍ଗରେ ମିଶିଗଲୁ । ମନ୍ତ୍ରୀଙ୍କୁ କିପରି ଦେଖାକରିବୁ, ସେଇ ଚିନ୍ତାରେ ଗୋଟେ ଲମ୍ବା କାଠବେଞ୍ଚ ଉପରେ ବସିଥାଉ । ଭାଗ୍ୟକୁ ମନ୍ତ୍ରୀଙ୍କ ଡ୍ରାଇଭର ଘରଭିତରୁ ବାହାରୁ ବାହାରୁ ବିନୋଦମାଷ୍ଟ୍ରଙ୍କୁ ଚିହ୍ନି ପାରିଲ । ତା' ଝିଅ ବିନୋଦ ସ୍କୁଲରେ ପାଠ ପଢ଼େ । ଝିଅକୁ ସ୍କୁଲକୁ ଛାଡ଼ିବାକୁ ଗଲବେଳେ ସେ ମାଷ୍ଟ୍ରଙ୍କୁ ଦେଖିଥିଲ ଏବଂ ମନ୍ତ୍ରୀଙ୍କ ପିଣ୍ଡାଉପରେ ଦେଖି ଚିହ୍ନି ପାରିଲ । ମନ୍ତ୍ରୀଙ୍କ ଡ୍ରାଇଭରଙ୍କ ସହିତ ଚିହ୍ନାହେଲ ପରେ, ବିରାଟ ବନ୍ୟା-ପ୍ଲାବିତ ନଦୀ ପାର ହେବାକୁ ଗୋଟେ ଡଙ୍ଗା ମିଳିଗଲ ପରି ଲଗିଲ । ଅଳ୍ପ ସମୟ ଭିତରେ ମୁଁ ଡ୍ରାଇଭରଙ୍କ ଆଗରେ ସବୁକଥା କହିଦେଲି ଏବଂ ଖଲିଲ୍ ମହାଜନ ଦେଇଥିବା ଚିଠି ମଧ୍ୟ ଦେଖାଇଲି । ଡ୍ରାଇଭର ବାବୁ ମୋ ହାତରୁ ଚିଠିଖଣ୍ଡିକ ନେଇ ମନ୍ତ୍ରୀ ବସିଥିବା ଘର ଭିତରକୁ ଗଲେ ଏବଂ ଗୋଟେ ମିନିଟ୍ ପରେ ବାହାରକୁ ଆସି ମତେ ଭିତରକୁ ଯିବାକୁ ନିର୍ଦ୍ଦେଶ ଦେଲେ । ଛାତିଟା ଖୁବ୍ ଜୋର୍‌ରେ ଧଡ଼୍ ଧଡ଼୍ ହେଲ । କବାଟ ଠେଲି ଭିତରକୁ ଗଲି । ମନ୍ତ୍ରୀ ମହାଶୟ ଗୋଟେ ଗୁରିପଟକୁ ଘୂରିଲ ଚେୟାରରେ ଓ ଆଉ ଦି'ତିନିଜଣ କିଏ ତାଙ୍କ ପାଖ ଚେୟାର ଉପରେ ବସିଥିଲେ । ମୋତେ ଦେଖି ସେ ପଗ୍ରୁରିଲେ ଖଲିଲ୍ ମହାଜନଙ୍କ କଥା । ତାଙ୍କ ଉପରେ କେମିତି ମାଡ଼ହେଲ । ମୁଁ ହଁ-ନା କରି ଠିଆ ହୋଇଥାଏ । କାରଣ ଖଲିଲ୍ ମହାଜନଙ୍କ ଉପରେ ମାଡ଼ ହେବାକଥା ମୁଁ କିଛି ଜାଣିନଥିଲି । ସଙ୍ଗେ ସଙ୍ଗେ ମନ୍ତ୍ରୀ ପି. ଏ.

ସାହେବଙ୍କୁ ଡାକ ପୁଲସ୍-ଇନସ୍‌ପେକ୍ଟରଙ୍କ ପାଖକୁ ଟେଲିଫୋନ୍ କରିବାକୁ ନିର୍ଦ୍ଦେଶ ଦେଲେ । ମୋତେ ମଧ୍ୟ କହିଲେ ଯେ ସେ ସବୁ ବନ୍ଦୋବସ୍ତ କରୁଛନ୍ତି । ମହାଜନେ କିଛି ବ୍ୟସ୍ତହେବା ଦରକାର ନାହିଁ । ତାଙ୍କ ମୁହଁରୁ ଏତିକି ଶୁଣିଲା ପରେ, ମୁଁ ପଦାକୁ ବାହାରି ପଡ଼ିଲି । ଯାହାହେଉ, ଭାଗ୍ୟ ଭଲଥିବା ଯୋଗୁଁ ପନ୍ଦର ମିନିଟ୍ ମଧ୍ୟରେ ମୋ କାମ ମନ୍ତ୍ରୀଙ୍କ ପାଖରୁ ସରିଗଲା । ମନ୍ତ୍ରୀଙ୍କ ଡ୍ରାଇଭର ବାବୁଙ୍କୁ ନମସ୍କାରଟିଏ ପକାଇ ଦୁହେଁ ବାହାରିଲୁ ।

ଶୀତଦିନିଆ ଉପରବେଳା । ମୁଁ ବନୋଦଠାରୁ ବିଦାୟ ନେଇ ବାଲକାଟି ବାଟଦେଇ ଫେରିବି ବୋଲି ଠିକ୍ କରି ସାଇକେଲ ଚଢ଼ିଲି । ବାଲକାଟି ବାଟରେ ଗଲେ ନିଆଳୀକୁ ସିଧାବାଟ । ମାତ୍ର ବାଟରେ ଭାର୍ଗବୀ ନଦୀ । ନଈରେ ଅବଶ୍ୟ ପାଣି ନଥାଏ । ବାଲି ଉପରେ ସାଇକେଲ ଠେଲି ଠେଲି ନଦୀପାର ହୋଇଗଲେ ବାଲକାଟି ବଜାର । ସେଇଠାରୁ ବାଲକାଟି-ବନମାଳୀପୁର କଚ୍ଚା ରୋଡ୍ । ଅଳ୍ପଦିନ ତଳେ ଯାଏ ଦୟା-ଭାର୍ଗବୀ ନଦୀ ଉପରେ ସେତେବେଳେ ପୋଲ ନଥିଲା ।

ସାଇକେଲ ଧରି ଦୟାନଦୀ ପାରି ହେଲାବେଳକୁ ଦିନ ରତରତ ହେଉଥାଏ । ଘଲେ ସାଇକେଲ ଅଗରେ ଡାଇନୋମା । ବାଲକାଟି ବଜାରରୁ ବନମାଳୀପୁର ପନ୍ଦର କିଲୋମିଟର । ବିଶ୍ୱନାଥପୁର ଗହ୍ୱର ପାରିହେଲେ ତେଣିକି ଗାଁକୁ ଗାଁ ଲାଗିଛି ।-ମନରେ ସାହସ ବାନ୍ଧି ସାଇକେଲରେ ଜୋର୍‌ରେ ପେଡ଼ାଲ ମାରିଲି । ବାଲକାଟି ବଜାରରୁ ବାଟ ତିନି କି ଚାରି କିଲୋମିଟର ଯାଇଛି କି ନାହିଁ, ଅଦିନିଆ ମେଘ ଖଣ୍ଡେ ବିଜୁଳି ମାରି ମାଡ଼ିଆସିଲା । ମେଘକୁ ଦେଖି ଖୁବ୍ ଜୋର୍‌ରେ ସାଇକେଲ ମାରିଲି । କଚ୍ଚା ରାସ୍ତା । ମଝିରେ ମଝିରେ ପଥର ଡେମା ବାହାରି-ଥାଏ । କେତେ ବାଟ ବା ମେଘ ସଙ୍ଗେ ଦଉଡ଼ିକରି ଯାଇଥାନ୍ତି । ବିଜୁଳି ସାଙ୍ଗକୁ ବର୍ଷା ମାଡ଼ିଆସିଲା । ମୁଁ ସାଇକେଲ ଗଡ଼ାଇ ରାସ୍ତାକଡ଼ ବରଗଛମୂଳ ଗୁଡ଼ିଆ ଦୋକାନ ପିଣ୍ଡାକୁ ଉଠିଲି । ଚାଳଘର । ସାମ୍ନାରେ ଖଣ୍ଡେ ଦରଭଙ୍ଗା ଲମ୍ବା ଚଉକିଣ୍ଡା ପଟାର ବେଞ୍ଚ୍ । ମୋ ଆଗରୁ ଆଉ ଜଣେ ଦି' ଜଣ ସେଇଠି ଠିଆ ହୋଇଥାଆନ୍ତି । ଅଦିନିଆ ମେଘଟା ଖୁବ୍ ଜୋର୍‌ରେ ବର୍ଷିବାକୁ ଆରମ୍ଭ କଲା । ଗୁଡ଼ିଆଦୋକାନ ଚାଳଅଗ୍ର ଟପ୍‌ଟପ୍ ପାଣି ପଡ଼ୁଥାଏ । ମେଘ ଅନ୍ଧାରେ ଚତୁର୍ଦ୍ଦିଗ ଅନ୍ଧକାର ହୋଇଗଲା । ଗୁଡ଼ିଆ ବିଚାରା ତା' ସେଉ, ପକୁଡ଼ି, ଗୁଲୁଗୁଲା, କଲିବ ଆଦିମାନଙ୍କ ଉପରେ ଖଣ୍ଡେ ମଇଳା କୋଚଟ ଗାମୁଛା ପକାଇଦେଇ ଡବା ଆଲୁଅରେ ପଇସା ଗଣିବାରେ ବ୍ୟସ୍ତ ରହିଲା । ବର୍ଷା ଛାଡ଼ିସିବାର କିଛି ସମ୍ଭାବନା ଦେଖାଯାଉ ନଥାଏ । ମଝିରେ ମଝିରେ ଗୁଡ଼ିଆବୁଢ଼ା ପଇସା ଗଣାରୁ ମୁହଁଉଠାଇ ବାହାର ଆଡ଼କୁ ଚାହୁଁଥାଏ । ମୋ ସାଇକେଲ ତା' ଦୋକାନ ସାମ୍ନାରେ ଓଦା ହେଉଥିଲା । ତାକୁ ବର୍ଷାରୁ ରକ୍ଷା କରିବା ପାଇଁ ଗୁଡ଼ିଆ ଦୋକାନ ଚାଳରେ ସ୍ଥାନ ନଥିଲା ।

ଅଧଘଣ୍ଟାଏ ଧରି ପ୍ରବଳ ବର୍ଷା ପରେ ବର୍ଷା କମିଥିଲେ ମଧ୍ୟ ଝିପିଝିପି ବର୍ଷା ହେଉଥାଏ । ମଝିରେ ମଝିରେ ବିଜୁଳି, ଘଡ଼ଘଡ଼ି ଶବ୍ଦରେ କାନ ଅତଡ଼ା ପଡ଼ୁଥାଏ । ବର୍ଷା କମିଲା ପରେ ସେ ଯୁଆଡ଼େ ଗଲେ । ମୁଁ ଗୁଡ଼ିଆ ଦୋକାନର ତଳକୁ ଓହ୍ଲାଇ ସାଇକେଲ ପୋଛୁଥିବାବେଳେ, ଦୋକାନୀ କହିଲା—ଆରେ ବାବୁ, ଏ ବର୍ଷା ରାତିରେ କୁଆଡ଼େ ଯିବୁ ! ଏ ଚକଟା ମାଟି ରାସ୍ତାରେ କଅଣ ସାଇକେଲ ଚାଲିବ ଯେ ସାଇକେଲ ବାହାର କରୁଛୁ ? ସତକଥା—ସାଇକେଲରେ ବସି ଯିବା ତ ଦୂର, ଟଳେଇ ଟଳେଇ ନେବା ମଧ୍ୟ ସମ୍ଭବପର ନୁହେଁ । ଚକଟା ମାଟି ଦି' ଚକାକୁ ଧରିଥାଏ । ପୁଣି ସାଇକେଲ ନଚାଲିଲେ—ଡାଇନୋମା ବା ଜଳିବ କେମିତି । ମୁଁ କିଛି ଭାବିପାରୁ ନଥିଲି । ଝିପିଝିପି ବର୍ଷାରେ ଭିଜୁଥିବାର ଦେଖି ଦୋକାନୀବୁଢ଼ା ମୋ ଘର, ଠିକଣା, ବାପା ନାଁ ବି ପଚାରିନେଲା । ସବୁ ଜାଣିଲା ପରେ ସେ ଅଳ୍ପ ଦୂରକୁ ଲକ୍ଷ୍ୟକରି କହିଲା ଯେ, ସେଇଠି ଗୋଟେ ଛୋଟ ମଠ ଅଛି, ରାତିଟା ସେଇଠି କଟାଇ ଦେବାପାଇଁ । ଏତିକି କହି ସେ ଦୋକାନ ବନ୍ଦ କରିବାକୁ ବାହାରିଲା ।

ସାଇକେଲକୁ ଠେଲି ଠେଲି ମୁଁ ସେଇ ମଠଆଡ଼େ ଗଲି । ମଠ ବୋଇଲେ ୪ ଗୁଣ୍ଠ ପ୍ରାୟ ଜମି ଉପରେ ଗୋଟେ ଛୋଟ ଦୁଇ ବଖୁରିଆ ଚାଳଘର । ଘର ଚାରିପଟେ ବାଇଗବା, କନଅର, ସିଙ୍ଘୁବାଡ଼ । ଗୋଟେ କୋଣରେ ଛୋଟ ମାଟି ପନ୍ଦାବସା ଲଣ୍ଡା କୂଅ । ମଠରେ ଥାଆନ୍ତି ଜଣେ ବାବାଜି—ବୟସ ପ୍ରାୟ ଷାଠିଏ ପାଖାପାଖି । ତାଙ୍କ କାମରେ ସାହାଯ୍ୟ କରିବା ପାଇଁ ଜଣେ ମାତା ଥାଆନ୍ତି । ବୟସ ତିରିଶ ପାଖାପାଖି । ଦୁଇଟି କୋଠରି ମଧ୍ୟରୁ ପୂର୍ବପଟ ଛୋଟ କୋଠରିରେ ପିତ୍ତଳମୂର୍ତ୍ତିର "ରାଧାକୃଷ୍ଣ" । କେତେଖଣ୍ଡ ଫଟୋ, ତାଳପତ୍ର ପୋଥି, ଖଣ୍ଡେ କାଠରୂଖା, ତା' ଛଡ଼ା ଗିନି ହଳେ ଦି'ହଳ, ଖଞ୍ଜଣି ହଳେ, ଖୋଳ ଗୋଟେ ଏବଂ ଠାକୁରଙ୍କ ନାଲିନେଳି କନା କେତେଖଣ୍ଡ ଝୋଟ ଦଉଡ଼ି ଉପରେ ଝୁଲୁଥାଏ । ପାଖକୁ ଲାଗି ଗୋଟେ ବଡ଼ ବଖରା ଘରେ ବାବାଜି ଓ ମାତା ରୁହନ୍ତି । ଘରକୋଣରେ ଦଇଟା ହେଁସ, କୋଚଟ ମଇଲା ତକିଆ ଗୋଟେ ଦଇଟା । ତା'ଛଡ଼ା ଘର-କରଣା ଜିନିଷ କେତେଟା ଭିତରେ କାଉଁଚ ପେଟେରା ଦଇଟା, ବାଉଁଶିଆ ଖଣ୍ଡେ, କାଠବାକ୍ସ ଇତ୍ୟାଦି । ଏଇଘର ପିଣ୍ଡା ଉପରେ ବାଉଁଶତାଟି ଦେଇ ରୋଷେଇ ଶାଳ ତିଆରି ହୋଇଛି । ସେଇଠି ରୋଷେଇ ହୁଏ ।

ସନ୍ଧ୍ୟାପରେ ମୁଁ ଯେତେବେଳେ ବାଉଁଶତାଟି ଗେଟ୍ ଖୋଲି ମଠ ହତାକୁ ପଶିଲି, ବାବାଜି ପାଟିକରି ଉଠିଲେ, କିଏ ? କିଏସେ··· । ମାତା ଘର ଭିତରୁ ଗୋଟେ ଅଧାକଳା ଲଣ୍ଠନ ଧରି ବାହାରି ଆସିଲେ । ସେତେବେଳେ ପର୍ଯ୍ୟନ୍ତ ମେଘ

ଶୁଭୁନଥାଏ । ବାବାଜୀଙ୍କ ପାଟିଶୁଣି ଗୁଡ଼ିଆ ଦୋକାନୀ—ଦୋକାନ ବନ୍ଦକରି ଗଲାବାଟରେ କହିଲି ଯେ, ମୁଁ ଗୋଟେ ଇସ୍କୁଲିଆ ପିଲା । ବର୍ଷା ଯୋଗୁଁ ଯା'ଇପାରିବନି, ରାତଟା ସେଇଠି ରହିବ । ସେ ଏତକ କହି ପିଣ୍ଡା ଉପରକୁ ଉଠିଲାବେଳକୁ ମୁଁ ମଠପିଣ୍ଡା ପାଖରେ ପହଞ୍ଚି ଯାଇଥିଲି । ବାବାଜୀ ମାତା ଦୁହେଁ ସେଇ ଅଧାକଳା ପଡ଼ିଯାଇଥିବା ଲଣ୍ଠନ ଆଲୁଅରେ ମୋ ଉପରେ ଆଖିପକାଇ ନେଲେ । ହାଫ୍ ପ୍ୟାଣ୍ଟ ସାଙ୍ଗକୁ ଖଣ୍ଡେ ହାଓ୍ୱାଇ ସାର୍ଟ-ଉପରେ ଖଣ୍ଡେ ହାଫ୍ ଶ୍ରା ସ୍ୱଇଟର । ପିଣ୍ଡା ଉପରକୁ ଉଠିଲି ପରେ ବାବାଜୀ ମୋଠାରୁ ଜମାନବନ୍ଦୀ ନେଲା ପରି ସବୁ ପଚାରିଗଲେ । ପାଖରେ ମାତା ଠିଆ ହୋଇଥାଆନ୍ତି । ମୋଠାରୁ ସବୁ ଶୁଣିଲା ପରେ ବାବାଜୀ ସାଇକେଲକୁ ପିଣ୍ଡା ଉପରେ ରଖିବାକୁ ଆଦେଶ ଦେଲେ । ସାଇକେଲକୁ ପିଣ୍ଡା ଉପରେ ଥୋଇ ଚାବି ଦେଲି ।

ମଠର ବାବାଜୀ ଷାଠିଏ ବର୍ଷର ଲୋକ ହେଲେ ବି ଦେଖିବାକୁ ବେଶ୍ ତାଗଡ଼ା । ହୃଷ୍ଟପୁଷ୍ଟ ଚେହେରା । ମୁଣ୍ଡରେ ଅଧାପାଚିଲା ବଗୁଲା ବାଳ । ଦେହରେ ଖଣ୍ଡେ ଗେରୁଆ ଗାମୁଛା । ମାତା ବି ବେଶ୍ ଗୋଲଗାଲ, ଶ୍ୟାମଲାଙ୍ଗୀ । ଖୋଲା କେଶଗୁଚ୍ଛକୁ ଗୋ'ଟେ ବଡ଼ ଗଣ୍ଠି କରି ମୁଣ୍ଡରେ ଖୋଷା କରିଥାନ୍ତି । ଦେହରେ ଗେରୁଆ ବସ୍ତ୍ର । କିଛି ସମୟ କଥାବାର୍ତ୍ତା ହେଲାପରେ ବାବାଜୀ ଦି' ଚାରି ଦମ୍ ଗଞ୍ଜେଇ ଟାଣିନେଲେ ଆଉ ତା' ଭିତରେ ଖାଇବା କଥା ପଚାରିଲେ । ମୁଁ ମେ଼ନ ରହିବା ଦେଖି ମାତାଙ୍କୁ କହିଲେ ଯେ ଠାକୁରଙ୍କ ପ୍ରସାଦ ବାଢ଼ିବା ପାଇଁ । ମାତା ବାବାଜୀଙ୍କ ପାଇଁ ଗୋଟେ ପିତ୍ତଳ ଥାଳ ଆଉ ମୋ ପାଇଁ ଖଣ୍ଡେ ଶୁଖିଲା କଦଳୀପତ୍ରରେ ଅରୁଆଭାତ, ଡାଲମା ଓ ଶାଗ ବାଢ଼ିଲେ । ଠାକୁରଙ୍କ ପ୍ରସାଦ ଯାହା ମତେ ଦେଲେ ସେତକ ସାଫ୍ କରିଦେଇ କଦଳୀପତ୍ର ଖଣ୍ଡିକ ବାହାରକୁ ଫିଙ୍ଗିଦେଲି । କୂଅପାଣିରୁ ଗୋଟେ ଗ୍ଲାସ ପିଇଲି ପରେ ମୋ ଦେହରେ ବଳଥିଲା ପରି ଜଣାପଡ଼ିଲା । ବାବାଜୀ ଭୋଜନ କରିସାରିଲା ପରେ, ମାତା ବାବାଜୀ ଖାଇଥିବା ପିତ୍ତଳଥାଳିରେ ପ୍ରସାଦ ସେବନ କଲେ । ସେ ଖାଇସାରିଲା ପରେ ବାସନକୁସନକୁ ଗୋଟେ କୋଣରେ ଥୋଇଦେଇ ଶୋଇବା ପାଇଁ ବିଛଣା ଠିକ୍ କଲେ ।

ବିଛଣା ଭିତରେ ଦି'ଖଣ୍ଡ ମୁନ୍ଦୁରା ହେଁସ । ବାବାଜୀ ଗୋଟେଘଟେ ସେଇ ମଇଳା କୋଚଟ ତକିଆ ମୁଣ୍ଡତଳେ ଦେଇ ଶୋଇଲେ । ମଝିରେ ମୋ ପାଇଁ ଖଣ୍ଡେ କାଠପିଢ଼ା ମୁଣ୍ଡତଳେ ଦେବାକୁ ବଢ଼େଇଦେଲେ । ମାତା ଆରପଟକୁ ଆଉ ଗୋଟେ ହେଁସ ପକାଇ ଶୋଇଲେ । ମୋ ଆଖିକୁ ନିଦ ଆସୁନଥାଏ । ସାଇକେଲ ବାହାର ପିଣ୍ଡାରେ । ତା'ର ଆଗଚକର ଧଳା ସ୍ପୋକଗୁଡ଼ାକ ବିଜୁଳି ଆଲୁଅରେ କବାଟ ଫାଙ୍କଦେଇ ଦେଖାଯାଉଥାଏ । ଅଧାଜଳା ଲଣ୍ଠନଟା ଲିଭିଗଲା ପରେ

ଘରଭିତରଟା କିଛିକିଛି ଅନ୍ଧାର ହୋଇଯାଇଥିଲା । ଦିନକର କଷ୍ଟ ଯୋଗୁଁ ମୋ ଆଖିରେ ନିଦ ଲାଗିଆସିଲା ।

( ୨ )

କ୍ଳାନ୍ତ ଶରୀରଟାକୁ ନିଦ୍ରା ସମ୍ପୂର୍ଣ୍ଣ ଆଚ୍ଛନ୍ନ କରିଆସିବା ବେଳେ ସ୍ୱପ୍ନନ୍ତ ଚକ୍ଷୁରେ ଭାସିଉଠିଲା ଏକ ବିଚିତ୍ର ଦୃଶ୍ୟ । ଗୋଟେ ଗ୍ଲେଟ ଅନ୍ଧକାର କୋଠରି ମଧ୍ୟରେ ଦୁଇଟା ବାଘବାଘୁଣୀ ମଝିରେ ନିଦ୍ରିତ ଏକ ମୃଗଶାବକ । ବ୍ୟାଘ୍ରଦମ୍ପତି ହିଂସ୍ର ଓ କ୍ଷୁଧାର୍ତ୍ତ ଅଥଚ ନିର୍ଭୟରେ ଶୀତରାତିର ଥଣ୍ଡାରେ ଜାକିଜୁକି ହୋଇ ଶୋଇ ଯାଇଥାଏ ନିର୍ବୋଧ ମୃଗଶାବକଟି । କିଏ ମୃଗଶାବକର ନରମ ମାଂସକୁ ପ୍ରଥମେ ଆଘ୍ରାଣ କରିବ ଏହି ଲୋଭରେ ତା'ଉପରେ ବାଘ-ବାଘୁଣୀ ଦୁହେଁ ଘନ ଅନ୍ଧକାର ମଧ୍ୟରେ ଅତ୍ୟନ୍ତ ଲୋଭନୀୟ ଦୃଷ୍ଟି ନିବଦ୍ଧ କରିଥାନ୍ତି ।

କିଛି ସମୟ ପରେ ବୃଦ୍ଧବ୍ୟାଘ୍ରଟା ମୃଗଶାବକ ପାଖକୁ ଲାଗିଆସିଥିଲା । ତା'ର ସମସ୍ତ ଶରୀର ମୃଗଶାବକ ଶରୀର ସଙ୍ଗେ ମିଶାଇ ଦେବାକୁ ଚେଷ୍ଟା କରିବା ଭିତରେ ତା'ର ବଳିଷ୍ଠ ହାତରେ ମୃଗଶାବକ ଦେହରେ କ'ଣ ଖୋଜିଦେଲା । ତା' ମୁଖର ନିଶ୍ୱାସରେ ମୃଗଶାବକ ଉଷ୍ଣତା ଅନୁଭବ କରୁଥିଲାବେଳେ ବୃଦ୍ଧବ୍ୟାଘ୍ର ମୃଗଶାବକର ସମସ୍ତ ଶରୀରଟା ତା' କୋଳ ଭିତରକୁ ଟାଣିନେଲା । ମୃଗଶାବକ ଅଜଣା ଭୟରେ ପାଟି କରିପାରୁନଥିଲା କିମ୍ବା ଜୋର୍‌କରି ତା' କୋଳଭିତରୁ ବାହାରି ଆସିବାକୁ ସାହସ କରିନଥିଲା । ମୃଗଶାବକର ଅଜାଣତରେ ସତେ ଯେମିତି ବାଘୁଣୀଟା ଜିଭ ଲହଲହ କରି ଅର୍ଦ୍ଧମୁଦ୍ରିତ ଆଖିରେ ଗୃହିଁରହିଥିଲା । ବାଘର ଭୁକ୍ତ-ଭୋଜନ ଦେଖି ସେ କ୍ଷୁଧାର ତାଡ଼ନାରେ ଯେପରି ଜର୍ଜରିତ ଏବଂ ଉତ୍ତେଜିତ । କେତେଦିନ ପରେ ଏମିତି ସୁନ୍ଦର କିଶୋର ମୃଗମାଂସ ହାବୁଡ଼େ ପଡ଼ିଛି । ହେଲେ ବ୍ୟାଘ୍ରଟା ଯେତେବେଳେ ଖାଇବା ଆରମ୍ଭ କରିଦେଲା, ସେ'ବା କେମିତି ଆଗେଇ ଆସନ୍ତା ! ଜୀବଜଗତରେ ବୋଧେ ଏହାହିଁ ନିୟମ ।

ଭୟ ଆଉ ସଙ୍କୋଚରେ ମୃଗଶାବକ ଚେତନା ଓ ଅବଚେତନା ଭିତରେ ପଡ଼ିରହିଥିଲା । ବ୍ୟାଘ୍ର କବଳରୁ ମୁକ୍ତିଲାଭ କଲାପରେ ଅନ୍ଧକାର ଭିତରେ ସେ ନିସ୍ତବ୍ଧରେ ଆସ୍ତେ ଆସ୍ତେ ତା' ପାଖରୁ ଘୁଞ୍ଚି ଆସିଥିଲା । ବୃଦ୍ଧବ୍ୟାଘ୍ର ମଧ୍ୟ ଆତ୍ମ-ସନ୍ତୋଷ ଲାଭକରି ଦୂରକୁ ଘୁଞ୍ଚିଯାଇ ଘୁଙ୍ଗୁଡ଼ି ମାରିବାକୁ ଆରମ୍ଭ କରିଦେଲା । ବ୍ୟାଘ୍ର ଗାଢ଼ନିଦ୍ରାରେ ଘୁଙ୍ଗୁଡ଼ି ମାରିବା ଅନୁଭବ କରି ମୃଗଶାବକ ଆଶ୍ୱସ୍ତି ଲାଭକଲା । ରାତିର ଅନ୍ଧକାର ଭିତରେ ନିଦ୍ରାଦେବୀ ତାକୁ ଛାଡ଼ି ଚାଲିଯାଇଥିଲେ, ଆଉ ଅନ୍ଧକାର ମଧ୍ୟରେ ସେ ଭୟଙ୍କର ଅନୁଭୂତି ତାକୁ ବାରମ୍ବାର ଉଦ୍‌ବେଳିତ କରୁଥିଲା ।

ହଠାତ୍ ତା' ଦେହରେ କାହାର ସ୍ପର୍ଶ ପାଇ ଭାବନାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ସେ ଅନୁଭବ କଲା ଅନ୍ଧକାର ଭିତରେ ବାଘୁଣୀଟା କେତେବେଳେ ତା' ପାଖକୁ ଲାଗିଆସିଛି । ପରେ ପରେ ନିଃଶବ୍ଦରେ ତା' ଦେହଟାକୁ, ତା' ଦେହ ଉପରକୁ ଟେକାଳନେବାକୁ ବାହୁ ପ୍ରସାର କରିଛି । ମେଘୁଆ, ଶୀତୁଆ ରାତିରେ ବାଘୁଣୀର କୋଳଟି ବେଶ୍ ଉଷୁମ ଲାଗୁଥିଲା । ସେ ତା'ର ଉନ୍ମୁକ୍ତ ନରମଦେହ ସଙ୍ଗେ ମୃଗଶାବକକୁ ଜଡ଼େଇ ଦେଇଥିଲା । ବିଚରା ମୃଗଶାବକ ଖୋଳକଲା ବାଘୁଣୀର ଶକ୍ତିଶାଳୀ କୋଳାଗ୍ରତ ଭିତରୁ ମୁକ୍ତ ହେବାକୁ ପ୍ରୟାସ ବି କରିପାରୁନଥିଲା । ସେ ନିଜକୁ ମୂକ, ଶକ୍ତିହୀନଭାବେ ତା' ପାଖେ ଆତ୍ମସମର୍ପଣ କରି ସ୍ୱେଚ୍ଛାକୃତ ଭାବ ନିଶ୍ଚେଜ ଭାବେ ବାଘୁଣୀ ଗୁଣ୍ଡଉପରେ ମୁଣ୍ଡରଖି ପଡ଼ିରହିଥିଲା । ବାଘୁଣୀର ଲମ୍ବା ଜିଭ ଗ୍ଭଟିଯାଉଥିଲା ତା'ର କଅଁଳିଆ ଦେହଟାକୁ । କ୍ଷୁଧାର୍ତ୍ତ ବାଘୁଣୀ ନିର୍ଭୟରେ ତା' ଦେହ ଉପରେ ଅତ୍ୟାଚାର କରିଗ୍ଭଲିଥିଲା । କିଛି ସମୟ ପରେ ବାଘୁଣୀ ତାକୁ ତଳକୁ ଖସାଇଦେଲା । ମୃଗଶାବକ ଅନ୍ଧାର ଭିତରେ ଆଖି ମିଟିମିଟି କରି ବାଘୁଣୀ ପାଖରୁ ଖସିଆସି ଦେଖିବାକୁ ଚେଷ୍ଟା କରୁଥିଲା ବୁଢ଼ାବାଘ ଆଉ ବାଘୁଣୀଠାରୁ ସେ କେତେ ଦୂରରେ ?

ହିଂସ୍ର ବାଘ-ବାଘୁଣୀର ମଝିରେ ମୃଗଶାବକ ଆଖିକୁ ନିଦ ଆସୁନଥିଲା । ବାଘଟା ଘୁଙ୍ଗୁଡ଼ି ମାରୁଥାଏ । ବାଘୁଣୀ ଅସ୍ୱସ୍ତିରେ ଛଟପଟ ହେଲାପରି ଜଣା-ପଡ଼ୁଥାଏ । ଅନ୍ଧାରରେ ମଧ୍ୟ ପାର୍ଶ୍ୱ ପରିସ୍ଥିତିକୁ ସେ ଅନୁଭବ କରୁଥିଲା, ଲକ୍ଷ୍ୟ-କରୁଥିଲା । ଝଞ୍ଜାପବନ ଆଉ ଶୀତରାତିର ବର୍ଷାରେ ତା ଦେହ ଆହୁରି ଥରିଉଠୁଥାଏ । ସେ ଭାବୁଥିଲା, ବାଘୁଣୀର ଲୋମଶ କୋଳଟା ବେଶ୍ ଉଷୁମ ଏବଂ ଆରାମ । ବାଘ-ବାଘୁଣୀ ମଝିରେ ରହି, ସେମାନେ ତା' ସଙ୍ଗେ ଖେଳ ଖେଳିଲାପରେ ତାଙ୍କ ଉପରେ ମୃଗଶାବକର ଭୟ କମିଆସୁଥିଲା । ବାଘୁଣୀର ନଖ, ଦାନ୍ତର ଆଘାତ ମନେପକାଇ ସେ କଷ୍ଟ ଅନୁଭବ କରିବା ପରିବର୍ତ୍ତେ ଦେହ ଓ ମନଭିତରେ ଏକ ଅଜଣା ଉତ୍ତେଜନା ଅନୁଭବ କରୁଥିଲା । "ଅଧାଗିଳା ବେଙ୍ଗ, ସାପ ପାଟିଭିତରେ ରହି ଆଗରେ ଉଡ଼ୁଯାଉଥିବା କାଙ୍କିକୁ ଉହୁଙ୍କି ଧରିନେଲାପରି ସାହସ ତା' ମନଭିତରେ ଜାଗିଉଠୁଥିଲା ।" କିଛି ସମୟ ଛଟପଟ ହେଲାପରେ, ବାଘୁଣୀ ପୁଣି ମୃଗଶାବକର ଦେହରେ ଗୁଡ଼େଇ ହୋଇଯାଇଥିଲା । ଏଥର ବାଘୁଣୀ ହାତ ତାକୁ ତା' ଆଡ଼କୁ ଟାଣିନେବା ପୂର୍ବରୁ ସେ ଯେପରି ବାଘୁଣୀ ଆଡ଼କୁ ପାଖେଇ ଯାଇଥିଲା । ବୋଧେ ବାଘୁଣୀ ସେଇଆ ଆଶା କରୁଥିଲା । କାଳବିଳମ୍ବ ନକରି ବାଘୁଣୀ ଟେକିନେଲା କିଶୋର ମୃଗଶାବକକୁ ତା'ର ସେଇ ଉନ୍ମୁକ୍ତ ଗୁଣ୍ଡ ଉପରକୁ ।

ବର୍ଷଣମୁଖର ଶୀତରାତିର ସେଇ ଅନ୍ଧକାର ଭିତରେ ବାଘୁଣୀ ସଙ୍ଗେ ମୃଗଶାବକ ନିର୍ଭୟ ମନରେ ଖେଳ ଖେଳିଥିଲା । ଖୋଳକଲା ବାଘୁଣୀ ପ୍ରତ୍ୟେକ

ମୁହୂର୍ତ୍ତରେ ହିଂସ୍ର ହୋଇଉଠୁଥିଲା । ବହୁସମୟ ଧରି ମୃଗଶାବକର ରକ୍ତ ଶୋଷଣ କଲାପରେ ବାଘୁଣୀ ତାକୁ ଛାଡ଼ିଦେଇଥିଲା ଆଉ ନିସ୍ତେଜ ଅବସ୍ଥାରେ ମୃଗଶାବକ ତା' କୋଳରୁ ଖସିଆସିଥିଲା ।

( ୩ )

ଓଁ, ଭୂଃ, ଭୁବଃ, ସ୍ଵଃ···ମନ୍ତ୍ର ଉଚ୍ଚାରଣରେ ମୋ ନିଦ ଭାଙ୍ଗିଯାଇଥିଲା । ନିଦଭାଙ୍ଗିବା ପରେ ପ୍ରଥମେ ମୁଁ ମୋର ସାଇକେଲ୍ ଆଡ଼େ ଚାହିଁଲି । ଠିକ୍ ଗଲା-ରାତିରେ ଯେଉଁ ସ୍ଥାନରେ ଥୁଆ ହୋଇଥିଲା, ସେଇ ଜାଗାରେ ଥୁଆ ହୋଇଥାଏ । ବାବାଜି ସକାଳ ନିତ୍ୟକର୍ମ ସାରି ଠାକୁର ଘରେ ଗାୟତ୍ରୀ ମନ୍ତ୍ରପାଠ କରୁଥିଲେ । ମାତା ଗୁଣୁଗୁଣୁ ହୋଇ ହରିନାମ ଭଜନ କରି ବଗିଚ୍ଚ ବାଡ଼ିରୁ ଫୁଲ ତୋଳୁଥିଲେ । ମୁଁ ଚାରିଆଡ଼େ ପୁଣିଥରେ ଆଖିବୁଲେଇ ଦେଇ କାହାକୁ କିଛି ନକହି ସାଇକେଲ ଧରି ରାସ୍ତାକୁ ବାହାରି ଆସିଲି ।



# ଅସ୍ପୃଶ୍ୟ ମନଟିରେ ତଥାପି ସ୍ପର୍ଶଟିଏ

ତାଙ୍କର ପ୍ରକୃତ ନାଁ କଅଣ ମୁଁ ଜାଣି ନଥିଲି । ଏବେ ବି ଜାଣିନି । ପ୍ରେମା ଖଣ୍ଡିଆ ବାହାହୋଇ ବାପଘର ଗାଁକୁ ପ୍ରଥମଥର ଫେରିଲାବେଳେ ତାଙ୍କ ହାତରେ ଖଣ୍ଡେ ଚିଠି ଦେଇଥିଲି । ସେଇ ଚିଠିରେ ତାଙ୍କୁ ସମ୍ବୋଧନ କରି ଲେଖିଥିଲି "ସ୍ନେହର ଲବଙ୍ଗ" ବୋଲି । ଏଇ ଲବଙ୍ଗନାମ୍ନୀ ଝିଅଟି ହଠାତ ମୋର ଦେଖା ହୋଇଥିଲା ତାଙ୍କର ଗାଁରେ । ଆମ ଗାଁଠାରୁ କୋଡ଼ିଏ କିଲୋମିଟର ତାଙ୍କ ଗାଁ । ମୁଁ ସେତେବେଳେ ମାଟ୍ରିକ୍ ପାସ୍ କରି କଲେଜରେ ପଢ଼ୁଥାଏ । ଦୋଳଛୁଟିରେ ଗାଁକୁ ଯାଇଥିଲି ଶିବଭାଇନା ବାହାଘରରେ ଯୋଗଦେବାକୁ । ଶିବଭାଇନା, ମୋ ଦଦେଇପୁଅ ଭାଇ । ଚଳନ୍ତି ପକ୍ଷ ସେତେ ସ୍ୱଚ୍ଛଳ ନଥିଲା । ତାଙ୍କର ବାହାଘର ଠିକ୍ ହୋଇଥିଲା ସୁନ୍ଦର ଗାଁର ଶାସନ ଦାମ ଆଚାର୍ଯ୍ୟଙ୍କ ଘରେ । ସୁନ୍ଦର ଗାଁ ଦାମ ଆଚାର୍ଯ୍ୟଙ୍କ ପରିବାର ବହୁପୂର୍ବେ ଖ୍ୟାତିଲାଭ କରିଥିଲା । ମାତ୍ର କାଳର କରାଳ ଗତିରେ ଦାମ ମକଦ୍ଦମଙ୍କର ଚଳନ୍ତି ପକ୍ଷ ତାଙ୍କ ଝିଅ ବାହାଘର ବେଳକୁ ଆଦୌ ସ୍ୱଚ୍ଛଳ ନଥିଲା । ତେଣୁ ବର କନ୍ୟାଘରର ଇଚ୍ଛା ଅନୁସାରେ ତୋଳାକନ୍ୟା ବାହାଘର ହେବ ବୋଲି ଠିକ୍ ହୋଇଥିଲା ।

ତୋଳାକନ୍ୟା ବାହାଘରରେ ଝିଅ ପୁଅଘରକୁ ବାହାହେବା ପାଇଁ ଆସେ । ଝିଅ ପୁଅଘରେ ଦିନକ ଆଗରୁ ପହଞ୍ଚେ । ପ୍ରଥା ଅନୁଯାୟୀ ସେଇଠି ତାଙ୍କର ବାହାଘର ହୁଏ । ଝିଅ ସହ ତାଙ୍କ ବାପା, କକେଇ, ଦଦେଇ ଆସିଥାନ୍ତି । ବାହାଘର ଭୋଜିଭାତ ବରଘରେ ହିଁ ହୋଇଥାଏ । ଶିବଭାଇନାର ବାହାଘର ସୁନ୍ଦର ଗାଁରେ ଠିକ୍ ହେଲାପରେ, ବାହାଘର ପାଇଁ କନ୍ୟା ଆଣିବା ଦାୟିତ୍ୱ ମୋ ଉପରେ ପଡ଼ିଥିଲା । ବାହାଘର ଦିନକ ଆଗରୁ ଶଗଡ଼ରେ ତାଳପତ୍ରଦିଆ ତାଟି ଲଗାଇ ବୋହୂ ଆଣିବାକୁ ସୁନ୍ଦର ଗାଁକୁ ଗଲି । ବଳଦଙ୍କ ବେକରେ ଦି'ହଳ ଘାଗୁଡ଼ି ଲାଗିଥାଏ । ଆମ ଗାଁ ଭୋଇସାହିର ଦୁଇଜଣ ନାମଜାଦା ଶଗଡ଼ିଆ ପାଣୁଆ ଓ ବନା ମୋ ସାଙ୍ଗରେ ଯାଇଥାନ୍ତି । ଘଣ୍ଟିବନ୍ଧା ଶଗଡ଼ରେ ନଈ, ନାଳ ପାରି ହୋଇ କନ୍ୟାଘର ଗାଁରେ ପହଞ୍ଚିଲା ବେଳକୁ ପ୍ରହରିକା ବାଲୁଆ ହୁକେ-ହୋ ଡାକୁଥିଲେ ।

ଶଗଡ଼ ଗାଁ ଦାଣ୍ଡ ଗୋହିରୀ ପାର ହୋଇ କନ୍ୟାଘର ପରେ ପହଞ୍ଚିଲା ବେଳକୁ ତାଙ୍କ ଘରେ ହଠାତ୍ କାନ୍ଦଣାର ଲହରୀ ଶୁଣାଗଲା—

ସବୁ ସରିଯିବ ମୋହରି ଅଳି—ଲୋ ବୋଉ ।
ଶାଶୁଘରେ ସାର ହୋଇବ ଗାଳି—ଲୋ ବୋଉ ।
ପେଟ କି ଜାଣିବ ପିଠିର ବ୍ୟଥା—ଲୋ ବୋଉ ।
ତୋ ବିନୁ କେ ମୋର ଜାଣିବ କଥା—ଲୋ ବୋଉ ।
ଖାଇ ନାହିଁ ବୋଲି କିଏ କହିବ—ଲୋ ବୋଉ ।
ଝୁରି ଝୁରି ନେତ୍ରୁ ନୀର ଝରିବ—ଲୋ ବୋଉ ।

ଶଗଡ଼ିଆ ଦୁ'ଜଣ ତାଙ୍କ ଶଗଡ଼ ମୁଆଳରେ ପଘା ଫିଟାଇଲା ବେଳକୁ ଭିକୀ ଭାଉଜଙ୍କ ବଡ଼ଭାଇ ମୋତେ ଶଗଡ଼ ଭିତରୁ ପାଛୋଟି ନେବାକୁ ଠିଆ ହୋଇଥାନ୍ତି । ପାଖରେ ଗାଁବାରିକ ଗୋଟେ ଅମୃତପଟାର ନୂଆପିଢ଼ା ପକାଇ ତାଳେ ପାଣିଧରି ମୋ ଗୋଡ଼ ଧୋଇବା ପାଇଁ ଅପେକ୍ଷା କରିଥାଏ । ଶଗଡ଼ରୁ ଓହ୍ଲାଇଲା ପରେ ସେ ମୋ ଗୋଡ଼ଧୋଇ ବେକରେ ପକାଇଥିବା ନାଲି-ଗାମୁଛାରେ ଗୋଡ଼ ପୋଛିଲା । ଭାଉଜଙ୍କ ଭାଇ ମୋତେ ନେଇ ତାଙ୍କ ଦାଣ୍ଡଘରେ ବସାଇବାକୁ ଜାଗା ଦେଲେ । ସେତିକବେଳେ ପର୍ଯ୍ୟନ୍ତ ଭାଉଜଙ୍କ ବାହୁନା ସରି ନଥାଏ । ସେ ଲଗାଇଯୋଖାଇ, ମୋତେ ଛୁଗୁଲାଇ ବାହୁନା ପକାଉଥାଆନ୍ତି । ଏପରିକି ମୋ ଚେହେରା, ମୋ ବେଶପୋଷାକ ଓ ଗଳାର ଝୁଲୁଥିବା ହାର ତାଙ୍କ ବାହୁନା ଭିତରେ ସେ ହାସ୍ୟଭାବରେ ବର୍ଣ୍ଣନା କରୁଥାଆନ୍ତି । ସେ ବାହୁନାଲାବେଳେ ତାଙ୍କ ଘରପଟେ ଆଠ ଦଶଜଣ ତାଙ୍କ ସାଥିଝିଅମାନେ ଘେରି ବସିଥିଲେ । ସେମାନେ ପ୍ରାୟ ସମସ୍ତେ ମୋ ବୟସର । ଯୌବନର ପ୍ରଥମ ସୋପାନରେ ପାଦ ଦେଇଥାନ୍ତି । ପ୍ରଜାପତିର ଡେଣାରେ ନୂଆ ନୂଆ ରଙ୍ଗ ଲାଗିଥାଏ । ସେମାନଙ୍କ ଭିତରୁ କଣେ-ଅଧେ ମୁଁ ବସିଥିବାର ଘରଫାଙ୍କରେ ମୋ ଆଡ଼େ ଟିକେ ମୁହଁଗୁଡ଼ିପି ଚାହିଁଦେଇ ମୁରୁକି-ହସା ମାରି ଭାଉଜଙ୍କ କାନରେ କଅଣ କହି ଦେଉଥାଆନ୍ତି । ତାପରେ ତାଙ୍କ କାନ୍ଦଣାରେ ମୋ ଗୁଣ ବର୍ଣ୍ଣନା ଶୁଭୁଥାଏ ।

ଭାଉଜଙ୍କ ବାହୁନା ଶୁଣି ଆଖପାଖ ଘରୁ ସାହିମାଇପେ ପଞ୍ଝେ ଆସି ପହଞ୍ଚି ଯାଇଥାଆନ୍ତି । କନ୍ୟା ଯେପରି ବାହୁନୁଥାଏ । ଗାଁର ସାଙ୍ଗସାଥୀ, ଦେଢେଇ, ଖୁଡ଼ୀଙ୍କୁ ଦେଖି ତାଙ୍କ ନାଁ ଧରି କାନ୍ଦୁଥାଏ । ସତେ ଯେପରି ସେ କଣେ ଆଶୁ କବି । କନ୍ୟାଦୁଃଖ ଦେଖି କେତେଜଣ ବୁଢ଼ୀ ମଧ୍ୟ କାନ୍ଦଣା ଆରମ୍ଭ କଲେ । କାନ୍ଦଣାର ଲହରୀ ସାରା ସାହିକୁ ଆନ୍ଦୋଳିତ କରୁଥାଏ । ସେ ସମୟରେ ଶାଶୁଘରକୁ ଯିବା-ବେଳକୁ ବାହୁନିବା ଏକ ପ୍ରଥା ଥିଲା । ଯେଉଁ ଝିଅ ଭଲ ବାହୁନି ପାରୁଥିଲା, ତାର ତାରିଫ୍ ହୁଏ ବାପଘରେ । ଯେ ଲଗେଇ ଯୋଖେଇ କାନ୍ଦିପାରୁ ନଥିଲା, ତା'ର

ନାଁରେ ଦୁର୍ନାମ ହେଉଥିଲା । ସମସ୍ତେ ଛିଗ୍ଛାକାର କରୁଥିଲେ । ଝିଅ ବିଦାୟ ହେଲା ପରେ ଝିଅର ବାହାନାକୁ ନେଇ ଗାଁ ପୋଖରୀତୁଠ, ତୋଟାବାଡ଼ିରେ କଥା ପଡ଼ୁଥିଲା ।

ଭାଉଜଙ୍କ କାନ୍ଦଣାପର୍ବ ସରିଲା ପରେ ସାହିମାଇପେ ଯେ ଯାହା ଘରକୁ ଫେରିଗଲେ । ମୁଁ ଟିକେ ଆଶ୍ୱସ୍ତି ଲାଭ କଲି । ମାତ୍ର ହଠାତ୍ ଭାଉଜଙ୍କ କେତେଜଣ ସାଙ୍ଗ ମୁଁ ବସିଥିବା ଘରକୁ ପଶିଆସି ମୋ ଚାରିପାଖରେ ଘେରି ଯାଇଥିଲେ । ସମସ୍ତଙ୍କ ମୁହଁରେ ପ୍ରଶ୍ନ । ସମସ୍ତେ ଭାଉଜଙ୍କ ବୟସର ଓ ମୋ ବୟସର ମଧ୍ୟ । ପ୍ରଶ୍ନ ଭିତରେ ଭାଇନା କେମିତିଆ, ଘର କେମିତିଆ, ତାଙ୍କ ସାଙ୍ଗ ଯାଇ ଘରେ ଚଳି-ପାରିବ କି ନାହିଁ ଏମିତି କେତେ ପ୍ରଶ୍ନ···। ଭାଇନାଙ୍କ କଥା ପଚାରି ସାରିଲାପରେ ମୋ ଉପରେ ସେମାନଙ୍କର ଥଟ୍ଟାତାମସାର ଆକ୍ରମଣ କ୍ରମେ ବଢ଼ି ଚାଲିଲା । ମୁଁ ଏକୁଟିଆ ସେମାନେ ଆଠ କି ଦଶଜଣ । କିଏ କେତେପ୍ରକାର କହି ଥଟ୍ଟା କରୁଥାନ୍ତି । କିଏ ମୋ ସାର୍ଟକୁ ଦେଖି ତ କିଏ ମୋର କେଶ ଭଙ୍ଗାକୁ ଦେଖାଇ ଥଟ୍ଟା କରୁଥାନ୍ତି ।

ସେମାନଙ୍କ ପ୍ରଶ୍ନବାଣରେ ମୁଁ ଅସ୍ତବ୍ୟସ୍ତ ହେଲେ ମଧ୍ୟ ତାଙ୍କ କବଳରୁ ରକ୍ଷା ପାଇବାର ବାଟ ନଥିଲା । ବୁଡ଼ିଗଲା ଲୋକ ସାପଲଙ୍ଗୁଳକୁ ଧରିଲାପରି, ସେମାନଙ୍କ ଭିତରୁ ଗୋଟେ ଝିଅ ଆଡ଼େ ମୁଁ ଚାହିଁଥିଲି । ଝିଅଟି ଥିଲା ତନୁପାତଳୀ, ଡେଙ୍ଗୀ, ଶାମଳବର୍ଣ୍ଣା । ଯୌବନର ପ୍ରଥମ ସୋପାନରେ ସେ ପାଦ ଦେଇଥାଏ । ତା'ର ପୋଟଳଚିରା ଆଖି ସତେ ଯେପରି ମୋ ମନଭିତର ପ୍ରତିବାଦକୁ ଲକ୍ଷ୍ୟ କରୁଥିଲା । ତା'ର ସାଙ୍ଗମାନେ ମୋ ସାର୍ଟକୁ ରଙ୍ଗ ଫୋପାଡ଼ିଲାବେଳେ, ମୋ ଚୁଟି ଭିଡ଼ିଲାବେଳେ, ସେ ମୋ ପକ୍ଷନେଇ କଥା କହୁଥିଲା । ଏହାଥିଲା ସେ ସମୟର ସାମାଜିକ ପ୍ରଥା । ଲଘୁ ପରିହାସ ମାଧ୍ୟମରେ ବନ୍ଧୁ ହେବାକୁ ଯାଉଥିବା ଦୁଇଟି ପରିବାର ମଧ୍ୟରେ ଜାଣିବା, ଜଣେ ଅଚିହ୍ନା ପାଖରେ ନିଜକୁ ଚିହ୍ନାଇବା, ଆତ୍ମୀୟତା ବଢ଼ାଇବା ଏବଂ ସମ୍ବନ୍ଧକୁ ଘନିଷ୍ଠ କରିବା ହିଁ ଥିଲା ଏହାର ସାମାଜିକ ଉଦ୍ଦେଶ୍ୟ ।

ରାତି ବଢ଼ିବା ସଙ୍ଗେ ସଙ୍ଗେ ସେମାନେ ସବୁ ଚାଲିଯାଇଥିଲେ ଏବଂ ମୁଁ ଖାଇପିଇ ଶୋଇଲାବେଳକୁ ରାତିଅଧ । ତା'ପରଦିନ ସକାଳୁ ନବାହାରିଲେ ଆମେ ଗାଁରେ ପହଞ୍ଚି ପାରିବୁନି । ପୁଣି ବାଟରେ କେତେ ନଈ, ନାଳ ପାରହେବାକୁ ପଡ଼ିବ । ଦିନଟାଯାକ ଶଗଡ଼ରେ ଧକାଡ଼ଚକଡ଼ ହୋଇ ଆସିଥିବାରୁ ମୋତେ ନିଦ ହୋଇଯାଇଥିଲା ।

ପରଦିନ ସକାଳେ ଉଠି ମୁହଁଧୋଇ ବାହାରେ ବସିଥାଏ । ଗାଁ ବାଳକ ମୋ ପାଇଁ ସାହାଡ଼ା ଦାନ୍ତକାଠି ଆଣିବାକୁ କଚ୍ଛୁରିଟିଏ ହାତରେ ଧରି ପାଖରେ ଥିବା ସାହାଡ଼ା ଗଛରେ ଚଢ଼ିଥାଏ । ଶଗଡ଼ିଆ ଦୁଇଜଣ ଗାଧୋଇବା ପାଇଁ ଗାଁମୁଣ୍ଡ ପୋଖରୀ ଆଡ଼େ ଯାଇଥାନ୍ତି । କନ୍ୟା ବିଦାୟ ପାଇଁ ଘରେ ସମସ୍ତେ ବ୍ୟସ୍ତ । କିଛି ସମୟପରେ ବାଳକ ଦାନ୍ତକାଠି ଓ ନଡ଼ିଆତେଲ ଶିଶି ଥୋଇ ଚାଲିଗଲା । ମୁଁ ଗାଧୋଇବା ପାଇଁ ବାହାରୁଥାଏ । ଦେଖିଲି ଗଳି ଭିତରେ ସେଇ ଝିଙ୍ଗୀ, ତନୁପାତଳୀ ଝିଅଟି ଦାଣ୍ଡପିଣ୍ଡାର ଏକପାର୍ଶ୍ୱରେ ଠିଆହୋଇ ମୋ ଆଡ଼େ ଚାହିଁଛି । ମୁଁ ତା'ଆଡ଼େ ଚାହିଁଲି ପରେ, ସେ ମୋତେ ହାତଠାରି ଡାକିଲା । ଯିବି କି ନଯିବି ଭାବୁଥିବାବେଳେ ମୁଁ ଚାଲିଯାଇଥିଲି ତା' ପାଖକୁ ଏବଂ ପରେ ପରେ ତା' ପଛେ ପଛେ ଘର ପଛପଟ ଅମୃତବଗିଚାକୁ । ଗଲାବେଳେ ସେ ମୋତେ କେତେ କଥା ପଚାରିଥିଲା । ମୁଁ କଅଣ କରୁଛି. କଅଣ ପଢ଼ିଛି । ବାଡ଼ିପଟ ବଗିଚା ପଛପଟେ ଆମେ ଦୁହେଁ ଠିଆ ହୋଇଥାଉ । ସେ ମୋତେ କେତେକଥା ପଚାରୁ-ଥାଏ । ମୁଁ ତା'ର ଉତ୍ତର ଠିକ୍‌ଭାବେ ଦେଇପାରୁନଥାଏ କି ସେ ପ୍ରଶ୍ନର ସେଭଳି କିଛି ଉତ୍ତର ଥିଲାଭଳି ମୁଁ ଅନୁଭବ କରିପାରୁନଥିଲି । କେବଳ ପ୍ରଶ୍ନ ମାଧ୍ୟମରେ ଦୁହେଁ ଦୁହିଁଙ୍କ ସାନ୍ନିଧ ଯେପରି ଆଶାକରି ଠିଆ ହୋଇଥିଲୁ ।

—ତା'ର ଥରଥର କଣ୍ଠର କଥା, ଚଳଚଞ୍ଚଳ ଚାହାଣି, ବାମପାଦ ବୁଢ଼ା-ଆଙ୍ଗୁଠିରେ ଭୂଇଁ ଉପରେ ଗାରକାଟିବାର ଭୂମିକା ମୋ ମନଭିତରେ ଏକ ନୂତନ ସ୍ୱାଦର ସ୍ପନ୍ଦନ ସୃଷ୍ଟି କରୁଥିଲା । ମୁଁ କେବଳ ତା' ମୁହଁକୁ ଚାହିଁରହିଥିଲି ଏବଂ ସେଇ ଚାହିଁବା ଭିତରେ ନିଜକୁ ଯେପରି ହଜାଇ ଦେଇଥିଲି । ସେ ମଧ୍ୟ । ଆମେ ଦୁହେଁ ଦୁହିଁଙ୍କ ଆଖିରେ ଅନ୍ୟ ଦେହ ଓ ମନକୁ ଦେଖୁଥିଲୁ ଆଉ ବେଳେବେଳେ ଯେତେବେଳେ ଆଖି ଆଖିରେ ମିଶିଯାଉଥିଲା, ଲାଜସରମରେ ମୁହଁ ତଳକୁ କରି ଦେଉଥିଲୁ । ନବକଳିକାଟିଏ ଯେପରି ମଉଆଳି ବସନ୍ତ ପବନରେ ମାତାଲ ହୋଇ-ଉଠେ, ଯୌବନର ପ୍ରଥମ ସୋପାନରେ ପାଦଦେଇ ଆମ ମନ-କଳିକାଟି ଯେପରି ମଉଆଳି ହୋଇଉଠୁଥିଲା ।

କିଛି ସମୟ ଅଧୋବଦନ ପରେ ସେ ଯେତେବେଳେ ମୋ ଆଡ଼େ ମୁହଁଟେକି ସ୍ମିତହାସ୍ୟ ଫୁଟାଇ ଚାହିଁଥିଲା, ତା'ର ଅଧରକୋଣରେ ଗୋଟେ ଲବଙ୍ଗର କିଛି ଅଂଶ ବାହାରକୁ ଦିଶୁଥିଲା । ଚାରିପଟକୁ ଆଖିବୁଲାଇନେଇ ସେ ମୋ ପାଖକୁ ଲାଗିଆସି କ୍ଷୀଣସ୍ୱରରେ କହିଥିଲା, 'ନିଅ'—ତା'ର ଅଳତାରଙ୍ଗର ପତଳା ଅଧର ଦୁଇଟି ଥରିଉଠିଥିଲା । ମୁଁ ଆଗେଇ ଯାଇଥିଲି, କିନ୍ତୁ ଲବଙ୍ଗଟି ତା' ଅଧର-କୋଣରେ ଦେଖି ରହିଯାଇଥିଲି । ସେ, ସେମିତି ଇଙ୍ଗିତଦେଇ ଚାହିଁରହିଥିଲା, ଏକ ଶିହରଣ ମନନେଇ । ମୋତେ ଅଟକିଯିବା ଦେଖି, ତା'ର ଥରିଲା ଟହଲା ଅଧର

କୋଣରୁ ଲବଙ୍ଗଟି ଖସିପଡ଼ିଥିଲା । ଅନ୍ୟମନସ୍କ ହୋଇ ତାକୁ ଲବଙ୍ଗଟି ଟୋଳିନେବା-ପାଇଁ ମୁଁ ନଇଁପଡ଼ିଲାବେଳେ ସେ କହିଥିଲା—'ଥାଉ' । ଯେଉଁଠୁ ନେବାର ତ ନେଇପାରିଲିନି, ତାକୁ କାହିଁକି ? ମୁହଁବୁଲାଇ ବଗିଚା ପଛପଟେ ଦେଇ ସେ ଫେରିଯାଇଥିଲା ।

ମୁଁ ଫେରିଆସିଥିଲି । ଘରଭିତରୁ ଝିଅର ବିଦାୟ କାନ୍ଦଣା ଶୁଭୁଥିଲା । ଶଗଡ଼ିଆ ଦି'ଜଣ ବଳଦ ବେକରେ ଘଣ୍ଟି ବାନ୍ଧିସାରିଥା'ନ୍ତି । ତରତରରେ ମୋ କାମସାରି ଦାଣ୍ଡକୁ ବାହାରିଲାବେଳକୁ ଗାଁମାଇପେ ସମସ୍ତେ ଭଉଜଙ୍କ ଘରପାଖେ ଜମିଯାଇଥା'ନ୍ତି । କାନ୍ଦଣାଲହରୀ ଭିତରେ କାହା କଥା କାହାକୁ ଶୁଭୁନଥାଏ । କିନ୍ତୁ ମୋ ଆଖି ଖୋଜୁଥିଲା ଜଣକୁ—ସେଇ ତନୁପାତଳୀ ଝିଅଟିକୁ, ଯେ ମୋତେ ଅଳ୍ପସମୟ ପୂର୍ବରୁ ଲବଙ୍ଗଟିଏ ଯାଚୁଥିଲା ।

( ଦୁଇ )

ଜୀବନରେ ବହୁ ଉତ୍‌ଥାନ ପତନ ଦେଇ ଗତିକଲାପରେ; ମୁଁ ଆସିଥାଏ ଓଡ଼ିଶାର ଉପାନ୍ତ ସହର ରାଉରକେଲାକୁ, ସରକାରୀ ଚାକିରିକୁ ଆଶ୍ରା କରି । ସେମିତି ଗୋଟିଏ ଫଗୁଣ ସକାଳରେ କର୍ତ୍ତବ୍ୟ ସମ୍ପାଦନା କରିବାପାଇଁ ଯାଇଥିଲି ଡକାୟତି କେସ୍‌ର ତଦନ୍ତ ତଦାରଖ କରିବା ପାଇଁ ।

—ରାଉରକେଲା ଇସ୍ପାତ ନଗରରେ ଡକାୟତି, ମର୍ଡ଼ରରେ କିଛି ନୂତନତ୍ୱ ନଥିଲେ ମଧ୍ୟ ସେଦିନ କାହିଁକି ମୁଁ ନିଜେ ଏ ଘଟଣା ତଦନ୍ତ ପାଇଁ ଗାଡ଼ିନେଇ ବାହାରି ଯାଇଥିଲି । ୧୭ ନମ୍ବର ସେକ୍ଟର, କ୍ୱାଟର ନଂ ସି-୧୩୬ରେ ପୂର୍ବ ମଧ୍ୟ-ରାତ୍ରିରେ ପ୍ରାୟ ଆଠ ଦଶଜଣ ଡକାୟତ ଘରଭାଙ୍ଗି ଗୃହକର୍ତ୍ତାଙ୍କ ସମସ୍ତ ସମ୍ପତ୍ତି ଲୁଟିନେଇଥିଲେ । ଡକାୟତି କରୁଥିବା ସମୟରେ ଅପରାଧୀମାନେ ଗୃହକର୍ତ୍ତାଙ୍କୁ ମଧ୍ୟ ନିର୍ମମଭାବେ ଆକ୍ରମଣକରି ଆହତ କରିଥିଲେ । ଅନ୍ୟ ସମସ୍ତ ପରିବାରବର୍ଗ ଭୟରେ ଆତଙ୍କିତ ହୋଇ ଆକ୍ରମଣର ପ୍ରତିରୋଧ ମଧ୍ୟ କରିପାରିନଥିଲେ ।

ଘଟଣାସ୍ଥଳ ପରିଦର୍ଶନ କରି ମୁଁ ଗୃହକର୍ତ୍ତାଠାରୁ ଅଧିକ ତଥ୍ୟ ଜାଣିବା ପାଇଁ ପ୍ରଶ୍ନ ପଚାରିଥିଲି । ଗୃହକର୍ତ୍ତା ଆହତ ଅବସ୍ଥାରେ ତାଙ୍କ ଖଟ ଉପରେ ବସିଥିଲେ । ଘଟଣା ବିଷୟ ଜାଣିବା ପାଇଁ ପରିବାରର ଅନ୍ୟମାନଙ୍କୁ ପଚାରିବାବେଳେ ଜଣେ ୪୫ ବର୍ଷର ଶ୍ୟାମଳାଙ୍ଗୀ ଭଦ୍ରମହିଳାଙ୍କୁ ଦେଖିଲି । ସେ ଥିଲେ ଘରର ଗୃହକର୍ତ୍ତ୍ରୀ । ତାଙ୍କ ସହ କଥାବାର୍ତ୍ତା ହେଲାବେଳେ ମୁଁ ଅନ୍ୟମନସ୍କ ହୋଇଉଠୁଥିଲି ଏବଂ ତାଙ୍କୁ ତାଙ୍କ ଜୀବନ ଯୌବନର ପ୍ରଥମ ସୋପାନକୁ ନେଇ ଚିହ୍ନିବା ପାଇଁ ଚେଷ୍ଟା କରିଥିଲି ।

ସେ କିନ୍ତୁ କହିଚାଲିଥାନ୍ତି ଡକାୟତମାନଙ୍କ ବିଷୟରେ । କିଛି ସମୟ କଥାବାର୍ତ୍ତା ଭିତରେ ମୁଁ ଅନୁଭବ କଲି ସେ ବି ମୋତେ ଚହ୍ନିବାକୁ ଚେଷ୍ଟା କରୁଛନ୍ତି ମାତ୍ର ଚହ୍ନିପାରୁନଥାନ୍ତି । ସନ୍ଦେହ ଓ ସଙ୍କୋଚ ଭିତରେ ଆବଦ୍ଧ ହୋଇ ସେ ଓ ମୁଁ ମୁହଁ-ଖୋଲି ପଚାରି ପାରୁନଥାଉ । ପରିବାରର ଲୋକ ଏବଂ ଅନ୍ୟ ପୁଲିସ୍ କର୍ମଚାରୀଙ୍କ ଉପସ୍ଥିତି ଆମ ଦୁହିଁଙ୍କର ଆନ୍ଦୋଳିତ ମନକୁ ଲକ୍ଷ୍ୟ କରିପାରିନଥିଲା ।

କଥାବାର୍ତ୍ତାର ପ୍ରସଙ୍ଗ ଭିତରେ ଷୋହଳ କି ସତର ବର୍ଷର ଝିଅଟିଏ ଗୋଟିଏ କାଚଥାଳିଆରେ ଲବଙ୍ଗ, କେନ୍ଦେଖଣ୍ଡ ପାନ ଧରି ମୋ ଉଦ୍ଦେଶ୍ୟରେ ବଢ଼ାଇ ଦେଇଥିଲା । ମୋ ଆନ୍ଦୋଳିତ ମନର ପ୍ରତିଚ୍ଛବି ସଦୃଶ୍ୟ ଢେଙ୍ଗୀ ଏବଂ ସେମିତି ଚଳଚଞ୍ଚଳ ଆଖିର ଝିଅଟି । କାଚଥାଳିରୁ ଲବଙ୍ଗଟିଏ ନେଇ ମୋ ଓଠକୋଣରେ ଜାକିଦେଲି ପରେ ଚାହିଁଥିଲି ସେଇ ଗୃହକର୍ତ୍ତ୍ରୀ ଭଦ୍ରମହିଳାଙ୍କ ଆଡ଼େ । ସେଇ ଚାହିଁବା ଭିତରେ ମୋ ଓଠକୋଣ ଥରିଉଠିଥିଲା ଓ ଲବଙ୍ଗଟି ଖସି ପଡ଼ିଗଲା । ଲବଙ୍ଗଟିକୁ ଉଠାଇ ନେବାପାଇଁ ଅଜାଣତରେ ନଇଁ ପଡ଼ିଥିଲେ ୪୫ ବର୍ଷର ସେଇ ଶ୍ୟାମଳାଙ୍ଗୀ ମହିଳା ଜଣକ ଏବଂ ତା ସଙ୍ଗେ ସଙ୍ଗେ ମୋ ପାଟିରୁ ସ୍ୱତଃପ୍ରବୃତ୍ତ ଭାବେ ବାହାରି ଯାଇଥିଲା—'ଆଉ' ।

ମୁହୂର୍ତ୍ତିକ ପାଇଁ ସେ ଚାହିଁଥିଲେ ମୋ ମୁହଁକୁ ଆଉ ମୁଁ ମଧ୍ୟ । ପର ମୁହୂର୍ତ୍ତରେ ମୁହଁ ବୁଲାଇନେଇ ବାହାର ଆଡ଼େ ଚାହିଁଲି । ଅଳ୍ପସମୟ ପୂର୍ବରୁ ଯେଉଁ ସକାଳ ଘନକୁହୁଡ଼ି ସହରକୁ ଘେରି ରହିଥିଲା—ସେ ଆସ୍ତେ ଆସ୍ତେ ଅପସରି ଯାଇଥିଲା ।



# ଶାମୁକା

ମଝିରେ ମଝିରେ ଅତୀତ ଦିନର ଘଟଣାମାନ ମନେପଡ଼େ । ଦିନଟେ କଟିଗଲେ କାଲିକି ସେ ଜୀବନ ଇତିହାସର ଗୋଟେ ପୃଷ୍ଠା ସୃଷ୍ଟି କରେ । ଧରାପୃଷ୍ଠରେ ଜନ୍ମହେଲା ଦିନଠାରୁ ସେଇ ଇତିହାସ ବହିର ପୃଷ୍ଠା ବଢ଼ି ଚାଲିଛି । କିଏ ଜାଣେ କେବେ ଏଇ ଇତିହାସର ପରିସମାପ୍ତି ଘଟିବ ?

ବହୁଦିନ ବିଦେଶରେ ରହିଲା ପରେ, ଡାକ୍ତର ଶୈଳେଶ୍ୱର ବିଦେଶରୁ ଫେରି ପୁରୀ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଆସିଥାନ୍ତି । ସାଙ୍ଗରେ ସ୍ତ୍ରୀ ଏବଂ ପିଲାମାନେ । ସମସ୍ତେ ସାଙ୍ଗହୋଇ ଜଗନ୍ନାଥଙ୍କ ଦର୍ଶନ ପରେ ସମୁଦ୍ରକୂଳକୁ ଫେରିଥିଲୁ । ସେତେବେଳକୁ ସମୁଦ୍ର ବେଳାଭୂମିରେ ଜନଗହଳି ବଢ଼ି ନଥାଏ । ପଞ୍ଝା ପଞ୍ଝା ହୋଇ ବଙ୍ଗାଳୀ ପର୍ଯ୍ୟଟକମାନେ ମେଳିବାନ୍ଧି କେତେ ଜାଗାରେ ବସିଥାନ୍ତି । ଜନଗହଳି ଆସ୍ତେ ଆସ୍ତେ ସନ୍ଧ୍ୟାପରେ ବଢ଼ୁଥାଏ । ପିଲମାନେ ସମୁଦ୍ରକୂଳରେ ପହଞ୍ଚିଗଲା ପରେ ଖେଳିବାରେ ଲାଗିପଡ଼ିଲେ । ମା'ମାନେ ବାଲି ଉପରେ ବସିପଡ଼ି ସଂସାର ଝମେଲା କଥାରେ ମଜିଗଲେ । ଆମେ ଦୁହେଁ ଗପସପ ହୋଇ ସମୁଦ୍ର ବେଳାଭୂମିରେ ଚାଲିଚାଲି କିଛି ଦୂରକୁ ଚାଲିଯାଇଥିଲୁ । ଆଗ ବେଳାଭୂମିରେ ଜନଗହଳି ନଥାଏ । ସମୁଦ୍ର ଉପରୁ ଭାସିଆସୁଥିବା ନାତିଶୀତୋଷ୍ଣ ହିଲ୍ଲୋଳ ଏବଂ ଦିଗ୍‌ବଳୟର ଆରପାରିରୁ ଉଠିଆସୁଥିବା ଜହ୍ନ ବେଳାଭୂମିର ପରିବେଶକୁ ମନୋମୁଗ୍ଧକର କରି ତୋଳି ରଖିଥିଲା । ଡାକ୍ତର ଶୈଳେଶ୍ୱର କହି ଚାଲିଥାଏ—ତା'ର ବିଦେଶୀ ରାଜ୍ୟର ଅନୁଭୂତି । ଯୌବନର ଅପରାହ୍ଣରେ ଆମେ ଦୁହେଁ ପାଦଦେଇ ସାରିଥିଲେ ମଧ୍ୟ ବେଳାଭୂମିରେ ଶୈଳେଶ୍ୱରର ବିଦେଶୀ ରମଣୀଙ୍କୁ ନେଇ ଅନୁଭୂତି କଥାଗୁଡ଼ିକ ବେଶ୍ ଉପଭୋଗ୍ୟ ହେଉଥିଲା । ହଠାତ୍ କଥାର ଗତିପଥକୁ ବଦଳାଇ ଦେଇ ଡାକ୍ତର ଅନୁଚ୍ଚ ସ୍ୱରରେ କହିଲେ, "ଆରେ ଶାମୁକାରେ" ।

ଶାମୁକା, ନାଁ ଟି ଶୁଣି ମୁଁ ରହିଯାଇଥିଲି । ଶୈଳେଶ୍ୱର ମଧ୍ୟ । ଅଳ୍ପ ଦୂରରେ ଏକାକୀ ଜଣେ ଭଦ୍ରମହିଳା ବାଲୁକାରାଶି ଉପରେ ବସିଥାନ୍ତି । ଝାପ୍‌ସା ଜହ୍ନ ଆଲୁଅରେ ତାଙ୍କର ମୁହଁ ଦୂରରୁ ଆମକୁ ଦିଶୁ ନଥିଲେ ମଧ୍ୟ ବେଶ ପରିପାଟୀରୁ

ମହିଳା ଜଣକେ ଯୁବତୀ ଏବଂ ଅଧୁନିକା ଭାବେ ଅନୁମାନ କରିବାର କିଛି ଅସୁବିଧା ନଥିଲା । ଆମେ ଆଉ ଆଗକୁ ଯାଇନଥିଲୁ । ଫେରିଲୁ ପଛକୁ, ସେଇ ଫେରିଲେ ଭିତରେ ଜୀବନ ଇତିହାସର କେତେଟା ପୃଷ୍ଠା ପଛକୁ ଓଲଟିଦେଉଥିଲି ।

୧୯୬୮ ମସିହା ଡିସେମ୍ବର ମାସ । ଅନୁଗୁଳ ସହରରେ ଶୀତ ପଡ଼ୁଥାଏ । ସନ୍ଧ୍ୟା ପରେ କାଁ-ଭାଁ ଲୋକମାନେ ରାସ୍ତାରେ ଯିବାଆସିବା କରନ୍ତି । ସମ୍ବଲପୁର-କଟକ ମୁଖ୍ୟ ରାସ୍ତାକୁ ଛାଡ଼ିଦେଲେ ଅନ୍ୟ ରାସ୍ତାରେ ସନ୍ଧ୍ୟା ଆଠଟା ପରେ ଜନ-ସମାଗମ ନଥାଏ । ଏମିତି ଗୋଟିଏ ସନ୍ଧ୍ୟାରେ ଶୈଳେଶ୍ୱର ଆଉ ମୁଁ ଅନୁଗୁଳ ଜେଲ୍ ପଛପଟ ରାସ୍ତାରେ ବୁଲୁଥିଲୁ । ଜେଲ୍‌ପାଚେରି ପଛପଟେ ଲମ୍ବି ଯାଇଥିବା ଏଇ ରାସ୍ତାଟି ସନ୍ଧ୍ୟାପରେ ଶୁନ୍‌ଶାନ୍ ହୋଇଯାଏ । ରାସ୍ତାକଡ଼ରେ ଷ୍ଟ୍ରୀଟ୍‌ଲାଇଟ୍ ମିଞ୍ଜି ମିଞ୍ଜି ହୋଇ ଜଳେ । ପନ୍ଦର-କୋଡ଼ିଏ ଫୁଟ ଦୂରରେ ଗଲେ ବି ଜଣେ ଜଣକୁ ଚିହ୍ନିବା କଷ୍ଟ । ରାସ୍ତାକଡ଼ର ପୁରୁଣା ବଡ଼ ବଡ଼ ଗଛ ରାସ୍ତାକୁ ଆହୁରି ଅନ୍ଧାରୁଆ କରି ରଖିଥାନ୍ତି । ସେଇ ରାସ୍ତାରେ ସେଦିନ ବୁଲି ବୁଲି ଗଲାବେଳେ ବିପରୀତ ଦିଗରୁ ଆସୁଥିବା ଜଣେ ଯୁବତୀଙ୍କୁ ରାସ୍ତାକଡ଼ ମିଞ୍ଜି ମିଞ୍ଜି ଆଲୁଅରେ ଦେଖି ଶୈଳେଶ୍ୱର କହିଥିଲା, 'ଏଇରେ ଶାମୁକା ଆସୁଛି··· ।'

ଶାମୁକା ଆସୁଛି··· ମୁଁ କିଛି ବୁଝିପାରି ନଥିଲି । ମାତ୍ର କେତେ ସେକେଣ୍ଡ ପରେ ସେଇ ଯୁବତୀ ଜଣକ ଆମ ପାଖଦେଇ ଯାଇଥିଲା । ସ୍ୱଳ୍ପ ଆଲୁଅରେ ମୁଁ ଯେତିକି ଦେଖିଲି, ଅନୁମାନ କରିନେଲି ଯେ ଯୁବତୀ ଜଣକର ବୟସ ଛବିଶ-ସତେଇଶ, ଉଚ୍ଚତା ୫ ଫୁଟ, ଉତ୍ତମ ସ୍ୱାସ୍ଥ୍ୟ, ପିନ୍ଧିଥିଲା ଖଣ୍ଡେ ସୁନ୍ଦର ନାଲିଶାଢ଼ି, ଗୋଟେ ହାତରେ ଧରିଥିଲା ଖଣ୍ଡେ ଧଳା ଗ୍ରେଟ ଟର୍କିସ୍ ଟାୱେଲ୍ ଏବଂ ଆର ହାତରେ ଗ୍ରେଟ ଦ' ହେଲିଆ ଟର୍ଚ୍ଚଲାଇଟ୍ । ଆମ ପାଖଦେଇ ଗଲାବେଳେ ସେ କଅଣ ଗୁଣୁଗୁଣୁ ହୋଇ କହୁଥିଲା କି ଗୀତବୋଲି ଯାଉଥିଲା, ମୁଁ ଠିକ୍ ଭାବେ ଶୁଣିପାରି ନଥିଲି । ଆମକୁ ପାରହୋଇ ଗଲାପରେ ସେ କେତେଥର ପଛକୁ ଫେରି ଆମ ଆଡ଼େ ଚାହିଁଥିଲା । ଜେଲ୍‌ପଛ ରାସ୍ତାରେ ଅଳ୍ପବାଟ ଆଗେଇଲା ପରେ ରାସ୍ତାର ଷ୍ଟ୍ରୀଟ୍‌ଲାଇଟ୍ ଜଳୁନଥିଲା । ଖମ୍ବଗୁଡ଼ିକରେ ଲାଇଟ୍‌ଗୁଡ଼ିକୁ ପିଲାମାନେ ଟେକାପକାଇ ଭାଙ୍ଗି ଦେଇଥିଲେ । ଆଗକୁ ରାସ୍ତା ଅନ୍ଧକାର । ଆମେ ଫେରିଲୁ । ସେତେବେଳକୁ ଯୁବତୀ ଜଣକ ବହୁଦୂରକୁ ଚାଲିଯାଇଥାଏ । ମଝିରେ ମଝିରେ ତା' ଯିବାଟା ରାସ୍ତାପାଖ ଆଲୁଅରେ ଜଣାପଡ଼ୁଥାଏ । ସେତେବେଳେ ମଧ୍ୟ ସେ ବେଳେବେଳେ ପଛକୁ ମୁହଁବୁଲାଇ ଚାହୁଁଥାଏ ।

ବଙ୍ଗଳାକୁ ଫେରିବା ବାଟରେ ଶୈଳେଶ୍ୱରକୁ ପଚାରିଥିଲି । ମୁଁ ଅନୁଗୁଳରେ ଟ୍ରେନିଂ ପାଇଁ ଆସିବା ପୂର୍ବରୁ ଶୈଳେଶ୍ୱର ଏଠାରେ ଡାକ୍ତର । ମୋ ଠାରୁ ଅନୁଗୁଳ

ସହରକୁ ସେ ବର୍ଷକ ଆଗରୁ ଭଲଭାବେ ଜାଣିଥିଲି । ସେ କହିଲା ସେ ସମସ୍ତେ ତାକୁ ଡାକନ୍ତି "ଶାମୁକା" । ଯୁବତୀ ଜଣକେ ନିଷ୍ଠଚରିତା । ପ୍ରତ୍ୟେକଦିନ ସନ୍ଧ୍ୟାରେ ସେ ଏଇମିତି ନିର୍ଜନ ରାସ୍ତାରେ ଯାଏ ।

ଅନୁଗୁଳ ସହରରେ ମୁଁ ରହୁଥିବା ବଙ୍ଗଳାଟି ମଧ୍ୟ ଲୋକମାନଙ୍କ ଆଗରେ ଗୋଟିଏ ଭୂତବଙ୍ଗଳା ରୂପେ ପରିଚୟ ଥିଲା । ପ୍ରାୟ ପାଞ୍ଚ ଏକର ଜମି ଭିତରେ ପିଆଶାଳ, ଶାଳ, ଆମ୍ବ, ପଣସ, ବର ଓ ଓସ୍ତ ଗଛମାନଙ୍କର ଜଙ୍ଗଲ ମଝିରେ ଏଇ ଅଠବଖରା ବିଶିଷ୍ଟ ବିରାଟ ବଙ୍ଗଳା । ମଝିରେ ଡ୍ରଇଁ-କମ୍-ଡାଇନିଂରୁମ୍ । ତାକୁ ଲାଗି ଚାରିପାଖେ ଛଅଟି ଶୋଇବାଘର । ପ୍ରତ୍ୟେକ ଶୋଇବାଘରକୁ ଲାଗି ସଂଲଗ୍ନ ଗାଧୁଆଘର । ଇଂରେଜମାନଙ୍କ ସମୟରେ ଏଠାରେ ମିସନାରୀମାନେ ରହୁଥିଲେ । ସେମାନେ ଦେଶ ଛାଡ଼ି ଗଲାପରେ ଅଫିସରଙ୍କ ଟ୍ରେନିଂ ପାଇଁ ସରକାର ଏହି ବଙ୍ଗଳାକୁ ନେଇଗଲେ । ବଙ୍ଗଳା ପଛପଟେ ଗୋଟେ ଗ୍ରେଟ ଚାଳଘର । ଏଇ ଘରେ ଟ୍ରେନିଂ ଅଫିସରମାନଙ୍କ ପାଇଁ ରୋଷେଇ ହୁଏ । ମୋ ପାଇଁ ଜଣେ ସରକାରୀ କୁକ୍ ଥାଏ । ରାତି ଅଠଟାବେଳକୁ ରୋଷେଇ କରିଦେଇ ଡାଇନିଂ ଘର ଟେବୁଲ ଉପରେ ଖାଇବା ଜିନିଷ ଥୋଇଦେଇ ରୋଷେଇଆ ବାହାରିଯାଏ ତା ବସାଘରକୁ । ମୁଁ ମୋର ସୁବିଧାରେ ଖାଇନିଏ । ପ୍ରଥମେ ପ୍ରଥମେ ଏଇ ଭୂତବଙ୍ଗଳାରେ ରହିବାକୁ ମୋତେ ଭଲଲାଗୁ ନଥିଲା । ମାତ୍ର ଆଠ-ଦଶଦିନ ରହିଗଲା ପରେ ବିଶେଷ କିଛି ଅସୁବିଧା ଜଣାପଡ଼ିଲାନି । ପ୍ରତ୍ୟେକଦିନ ସନ୍ଧ୍ୟାବେଳକୁ ଡାକ୍ତର, ସେଲ୍‌ଟାକ୍ସ ଅଫିସର ଶଶୀମିଶ୍ରେ ଏବଂ ଅଧ୍ୟାପକ ଯତୀନ୍ ପଟ୍ଟନାୟକ ଆସନ୍ତି । ଗପସପ ଜମେ । ତାଅସ ଖେଳ ଚାଲେ । ସେମାନେ ଯାଉଯାଉ ରାତି ଏଗାର । ପରେ ପରେ ମୁଁ ଶୋଇଯାଏ । ସକାଳ ହେଲେ, ସନ୍ଧ୍ୟାପର୍ଯ୍ୟନ୍ତ କଠିନ ଟ୍ରେନିଂ, ସମୟ ମିଳେନି ଅନ୍ୟକିଛି ଚିନ୍ତା କରିବା ପାଇଁ । ସେଦିନ ରାତିରେ ଶୈଳେଶ୍ୱର ମୋତେ ବଙ୍ଗଳାରେ ଛାଡ଼ିଦେଇ ଚାଲିଗଲା । ଏକୁଟିଆ ନିର୍ଜନ ବଙ୍ଗଳାରେ ଶୋଇଲାବେଳେ ମୋର ଶାମୁକା କଥା ମନେପଡ଼ୁଥିଲା ।

ପରଦିନ ସନ୍ଧ୍ୟାର ଘଟଣା । ସନ୍ଧ୍ୟାପରେ ମୁଁ ବଙ୍ଗଳାରୁ ବାହାରିଲାବେଳେ ପୂଜାରୀକୁ କହିଯାଇଥିଲି ଯେ, ମୁଁ ଡେରିରେ ଫେରିବି । ସେ ମୋତେ ଖୋଜିବେ, ଅପେକ୍ଷା କରିବାକୁ ମନାକରିଦେବୁ । ବଙ୍ଗଳାରୁ ବାହାରି ବଜାରଆଡ଼େ ବୁଲିବୁଲି ଠିକ୍ ରାତି ଆଠଟାବେଳକୁ ମୁଁ ଜେଲ୍ ପଛପଟ ନିର୍ଜନ ରାସ୍ତାରେ ଗୋଟେ ପ୍ୟାକେଟ୍ ଚିନାବାଦାମ୍ ଧରି ଚାଲିଥାଏ । ଚିନାବାଦାମ୍ ପାଟିରେ ପକାଇ ପକାଇ ରାସ୍ତାର ସେହି ଅନ୍ଧାରମୁଣ୍ଡରେ ମୁଁ ପହଞ୍ଚିଥିଲି । ପୁଣି ଫେରିଲି । ଫେରିଲାବେଳେ ସେଇ ଯୁବତୀଜଣକ ଦୂରରୁ ଆସୁଥିବାର ଦେଖାଗଲା । ମୁଁ ରାସ୍ତାକଡ଼ର ବରଗଛମୂଳ ଛାଇପାଖେ ଠିଆହୋଇ ଚିନାବାଦାମ ଜୋର୍‌ରେ ପାଟିରେ ପକାଇବାରେ ଲାଗିଲି ।

ଗୁଡ଼ାଟା ଧଡ଼୍‌ଧଡ଼୍ ପଡ଼୍ୁଥାଏ । ଗୃହଅାଡ଼କୁ ଗୃହୁଁଥାଏ । କାଳେ କିଏ ମୋ ରଙ୍ଗଢଙ୍ଗକୁ ଲକ୍ଷ୍ୟ କରୁଛି କି ନାହିଁ । ଶାମୁକା ଆସ୍ତେ ଆସ୍ତେ ପାଖେଇ ଆସୁଥିଲା । ଗ୍ରୁପିଗ୍ରୁପିକିଆ ଅନ୍ଧାରଭିତରେ ମୋ ଠିଆହେବାକୁ ସେ ବୋଧେ ବହୁଦୂରରୁ ଠଉରେଇ ନେଇଥିଲା । ଠିକ୍ ମୋ ସାମ୍ନାରେ ପହଞ୍ଚିଲା ପରେ ସେ ରହିଯାଇଥିଲା, ମୁହଁରେ ଅଳପ ଅଳପ ହସ । କୁରଙ୍ଗୀ ଗୃହାଣି । ସାମ୍ନାରେ ଦେଖି ମୋ ପାଟି ଝିନ ମାରିଯାଇଥିଲା—ପାଟିରୁ କଥା ବାହାରୁ ନଥିଲା । ଦେହରୁ ଗମ୍‌ଗମ୍ ଝାଳ ବାହାରୁଥିଲା । ଠିକ୍ ଏତିକିବେଳକୁ ଦୂରରୁ ସାଇକେଲ୍ ଘଣ୍ଟି ଶୁଣି ମୁଁ ତାକୁ କିଛି କହିବା ପୂର୍ବରୁ ବଙ୍ଗଳା ରାସ୍ତା ଧରିଥିଲି । ଭୟରେ ପଛକୁ ଗୃହିଁବାକୁ ମଧ୍ୟ ସାହସ ନଥିଲା ।

ବଙ୍ଗଳାକୁ ଫେରିଲାବେଳକୁ ରାତ୍ରି ପ୍ରାୟ୍ ନଅ । ପୂଜାରୀ ଖାଇବା ପ୍ରସ୍ତୁତ କରି ଡାଇନିଂ ଟେବୁଲ ଉପରେ ରଖିଦେଇ ବାହାର ପିଣ୍ଡାରେ ଘୂମାଉଥାଏ । ମୋତେ ଦେଖି ସେ ଖାଇବାଜିନିଷ ପ୍ରସ୍ତୁତ କରିଦେଇଛି ବୋଲି କହି ଯିବା ପାଇଁ ତରତର ହେଲା । ହାତଗୋଡ଼ ଧୋଇ ଖାଇବା ଭିତରେ ପୂଜାରୀ ବଙ୍ଗଳା ଗୁଡ଼ି ତା' ବସାଘର ଆଡ଼େ ବାହାରି ଗୃଲିଯାଇଥାଏ । ଖାଇସାରି ମୁଁ ମୋର ଶୋଇବା କୋଠରିକୁ ଫେରିଲି । ଟେବୁଲଲାଇଟ୍ ଜାଳି ବହିଖଣ୍ଡେ ଧରି ପଢ଼ୁଥାଏ । କିଛିସମୟ ପରେ ବାହାର ବାରଣ୍ଡାରେ ପାଉଁଜିର ରୁଣୁଝୁଣୁ ଶବ୍ଦ ଶୁଭିଲା । କାନଡେରି ବାରଣ୍ଡାଆଡ଼େ ଶବ୍ଦଟା କେଉଁ ଦିଗରୁ ଆସୁଛି, ଜାଣିବାକୁ ଚେଷ୍ଟାକଲି । ପାଖେଇଲାର ରୁଣୁଝୁଣୁ ଶବ୍ଦ ଠିକ୍ ମୋର କୋଠରି ଦୁଆରମୁହଁ ପାଖେ ବନ୍ଦ ହୋଇଗଲା । ପରେ ପରେ କବାଟରେ ମୃଦୁ କରାଘାତ । ଡରରେ ମୋର ଦେହ ଶୀତେଇ-ଉଠିଲା । କିଛିସମୟ ଗୁଡ଼ି ପୁଣି ସେଇ ମୃଦୁ ଶବ୍ଦ । ସାହସ ନେଇ କବାଟ ଖୋଲିଲି । ବାହାର କବାଟକୁ ଲଗି ଠିଆହୋଇଥିଲା ଶାମୁକା । ମୁହଁରେ ତେଇ ହସ । ଇଲେକ୍ଟ୍ରିକ୍ ସକ୍ ଲଗିଲାପରି ମୁଁ ଫେରିଆସିଲି ମୋ କୋଠରି ଭିତରକୁ । ମାତ୍ର 'ଶାମୁକା' ବିନାଦ୍ୱିଧାରେ ମୋ ପଛେ ପଛେ ମଧ୍ୟ ମୋ କୋଠରି ମଧ୍ୟକୁ ପଶିଆସିଲା । ମୁଁ କିଛି କହିବା ପୂର୍ବରୁ ସେ ମୋ ଶୋଇବାଘରର କବାଟ ଆଉଜାଇ ଦେଇ ଖଟ-ବାଡ଼କୁ ଧରି କହିଲା, "କ'ଣ ଡରିଗଲେ, ମୁଁ ଅଶରୀରୀ ନୁହେଁ, ରକ୍ତମାଂସଧାରୀ ମଣିଷ । ରାସ୍ତାରେ ଆପଣଙ୍କ ଅପେକ୍ଷାରୁ ଠିକ୍ ଜାଣିଥିଲି । ତା'ଛଡ଼ା ଏ ବଙ୍ଗଳାକୁ ଯେତେ ଟ୍ରେନିଂ ଅଫିସରମାନେ ଆସିଛନ୍ତି ମୁଁ ସମସ୍ତଙ୍କୁ ଜାଣେ । ଏ ବଙ୍ଗଳାର ଅନ୍ଧିକନ୍ଧି ମୋତେ ଜଣା । ଆପଣ ନୂଆହୋଇ ଆସିଛନ୍ତି, ସେଥିଲାଗି ଡର ଡର ଲାଗୁଥିବ । ସମସ୍ତଙ୍କୁ ସେମିତି ବି ଲାଗୁଥିଲା ।" ଏତିକି କହିସାରି ସେ ମୋ ବାଥ୍‌ରୁମ୍ କବାଟ ଖୋଲିସାରି ବାଥ୍‌ରୁମ୍‌କୁ ଯାଇ, ନିଜ ମୁହଁହାତ ଧୋଇ ତା' ସାଙ୍ଗରେ ଆଣିଥିବା ଟର୍କିସ୍ ଟାଓ୍ୱେଲରେ ମୁହଁ ପୋଛୁ ପୋଛୁ କହିଲା, "କ'ଣ

ଆପଣଙ୍କ ଖଟରେ ବସିପାରେ କି ?" ତା' କଥାରେ ଭୟ କି ସଙ୍କୋଚ ନଥିଲା । ସତେ ଯେପରି ସେ ମୋର ବହୁଦିନର ଜଣାଶୁଣା ଅନ୍ତରଙ୍ଗ ବନ୍ଧୁ ।

ଅଜଣା ଭୟରେ ମୋ ଦେହରୁ ଗମଗମ୍ ହୋଇ ଝାଳ ବାହାରୁଥାଏ । କ'ଣ ଉତ୍ତର ଦେବି ସେକଥା ମୋ ପାଟିକୁ ମଧ୍ୟ ଆସୁନଥାଏ । ଶାମୁକା ଘରର ମଶିଣ ସରି ସେତେବେଳକୁ ମୋ ବିଛଣା ଉପରେ ଚକାପକାଇ ଜମେଇ ବସିଲାଣି । ବସିଲା ପରେ ସେ ପୁଣି କହିଲା—"ଡରିବାର କିଛି ନାହିଁ, ରାତିରେ ଏ ବଙ୍ଗଳାକୁ କେହି ଆସନ୍ତିନି କି ଆସିବେନି । କେବଳ ଆପଣ ଆଉ ମୁଁ । ପାଞ୍ଚବର୍ଷର ଚାକିରି ଭିତରେ ମୁଁ ରାତିରେ ଏଠାକୁ କିଏ ଆସିବା କେବେ ଦେଖିନି ।" ଶାମୁକାର କଥା କହିବା ଭିତରେ ମୁଁ କିଛି ମନର ବଳ ସଂଗ୍ରହ କରି ନେଇଥିଲି । ମନର ଭୟଟା ଆସ୍ତେ ଆସ୍ତେ ଦୂରେଇ ଯାଉଥାଏ ଆଉ ଯୁବସୁଲଭ ଚପଳତା ଆଗକୁ ମାଡ଼ିମାଡ଼ି ଆସୁଥାଏ । ମୁଁ ମୁହଁଟେକି ଶାମୁକା ଆଡ଼େ ଭଲଭାବେ ଚାହିଁଲି । ଗୋଲ୍‌ଗାଲ୍ ମୁହଁ, ପୋଟଳଚିରା ଆଖି, ମୁହଁରେ ମୋନାଲିସାର ହସ, ଶ୍ୟାମଳାଙ୍ଗୀ ହେଲେ ବି ସୁନ୍ଦରୀ ଓ ସ୍ୱାସ୍ଥ୍ୟବତୀ, ପରିଧାନ ବସ୍ତ୍ର ପରିଷ୍କାର ପରିଚ୍ଛନ୍ନ । ମୁଁ କିଛି ନକହିବାର ଦେଖି ସେ ପୁଣି କହିଲା, "ଟଙ୍କାପଇସା କଥା ଭାବୁଛନ୍ତି କି ? ଏ ବଙ୍ଗଳାରେ ବାକି ବି ଚାଲେ । ଛାଡ଼ନ୍ତୁ ଏ ବଙ୍ଗଳା ସହିତ ମୋର ଟଙ୍କା-ପଇସାର ସମ୍ପର୍କ ନୁହଁ, ସମ୍ପର୍କ ମନର । ଆସନ୍ତୁ ପଛପଟ ସିଡ଼ିଦେଇ ଛାତ ଉପରକୁ ଯାଇ ସେଇଠି ବସିବା, ଭାରି ଭଲଲାଗିବ ।"

ଏତିକି କହି ସେ ମୋର ଖଣ୍ଡେ ବେଡ଼୍‌ସିଟ୍ ଆଉ ତକିଆଟିଏ ଧରି ଛାତ ଉପରକୁ ଯିବାପାଇଁ ବାହାରିଲା । ପ୍ରାୟ ପନ୍ଦରଦିନରୁ ଅଧିକ ଏଇ ବଙ୍ଗଳା ଭିତରେ ରହିଥିଲେ ମଧ୍ୟ ଘରର ଛାତ ଉପରକୁ ମୁଁ ଆଗରୁ ଯାଇନଥିଲି । ରାତିରେ ଶାମୁକା ପଛେ ପଛେ ମୁଁ ଛାତ ଉପରକୁ ଉଠିଥିଲି । ଛାତ ଉପରକୁ ଗଲାପରେ ମୋ ମନର ଭୟ ବହୁପରିମାଣରେ ଦୂରେଇ ଯାଇଥିଲା ।

ଶୀତଦିନିଆ ରାତିଟା ନିର୍ଜନ ହୋଇଉଠୁଥାଏ । ସେଇ ରାତିର ନିଛାଟିଆ ଭୂତବଙ୍ଗଳାର ଛାତଉପରେ ଯୁବତୀ ଶାମୁକା ଆଉ ମୁଁ । ଆକାଶରେ ସେ ରାତିରେ ଜହ୍ନ ନଥିଲା ମାତ୍ର ତାରାଗୁଡ଼ିକ ରଣିଫୁଲ ପରି ବିଛୁହୋଇ ପଡ଼ିଥାନ୍ତି । ଶାଳବଣର ଶୀତୁଆପବନ, ବଙ୍ଗଳାର ନିକାଞ୍ଚନ ପରିବେଶ, ନିର୍ଜନ ରାତିରେ ଯୁବତୀର ସାନ୍ନିଧ୍ୟ ମୋ କୁମାର-ଜୀବନର ଶେଷ ଯବନିକା ଟାଣିବା ପାଇଁ ଯେପରି ମଞ୍ଚ ପ୍ରସ୍ତୁତ କରୁଥିଲା ।

ନାଟକ ଆରମ୍ଭ ହେବାର ପ୍ରସ୍ତୁତିପର୍ବ ପ୍ରାୟ ଶେଷ ହୋଇଯାଇଥିଲା । ତାରା ଆଲୁଅରେ ଆଲୋକିତ ଖୋଲା ରଙ୍ଗମଞ୍ଚ ଉପରେ ନାୟକ-ନାୟିକା ଅଭିନୟ

କରିବାପାଇଁ ପ୍ରସ୍ତୁତ ଥିଲେ । ସେତିକିବେଳକୁ ନାୟିକା ନମ୍ରବଧିତା ଭଙ୍ଗୀରେ ପଗ୍ଗରିଲ, "ଆପଣ ମଦ ପିଅନ୍ତି ?" ମଦ…? ହଁ ମଦ…। ମୁଁ ତା' ମୁହଁକୁ ମୁହଁ ଟେକି ଚାହିଁଲବେଳକୁ ସେ ମୋ କଥାର ଖିଅଧରି ଆରମ୍ଭ କରିଥିଲା—"ହଁ, ମଦ । ଅଧଗ୍ଲାସେ କି ଗ୍ଲାସେ ମଦ ପିଇଦେଲେ ଆପଣଙ୍କ ମନର ଦ୍ୱିଧା ଓ ଆଶଙ୍କା ଦୂରେଇ ଯାଆନ୍ତା । ଆପଣଙ୍କ ଆଉ ମୋ ଭିତରେ ତଫାତ୍‌ଟା ବୁଝୁନ୍ତାନି । ଦେଖନ୍ତୁ; ମୁଁ ଆପଣଙ୍କୁ ଶୋଇବା ରୁମ୍‌ରୁ ଘରର ଛାତ ଉପରକୁ ଅଣିଲିଣି । ଏପରି ଏକ ନିର୍ଜନ ପରିବେଶ ଭିତରେ ଆପଣ ଆଉ ମୁଁ । ତଥାପି ଆପଣ ଏପର୍ଯ୍ୟନ୍ତ ମୋ ଦେହ ମଧ ସ୍ପର୍ଶ କରିନାହାନ୍ତି, କାହିଁକି ଜାଣନ୍ତି ? ଦ୍ୱିଧା ଆଉ ଆଶଙ୍କା, ଆପଣଙ୍କ ମନର ଉଚ୍ଛଳ ତରଙ୍ଗକୁ ବାଧାଦେଇ ଆସୁଛି । ମନର ଦ୍ୱିଧା ଆପଣଙ୍କ ପାଖରେ ମୋର ପରିଚୟ କରାଇ ଦେଇଛି ଯେ, ମୁଁ ଜଣେ ବାରଙ୍ଗନା । ଯୁବତୀ ହେଲେ ବି ମୋ ପାଖରେ ପ୍ରେମ ନାହିଁ, ମନ ନାହିଁ, ଅଛି କେବଳ ଲୋଭ । ଏପର୍ଯ୍ୟନ୍ତ ମୋର କାର୍ଯ୍ୟକଳାପ, ଦେହ ବିକି କରି ସଉଦା କରିବାର ଉପକ୍ରମଣିକା ଛଡ଼ା ଆଉ କିଛି ନୁହେଁ । ଆଉ ଭୟ ? ଭୟ ଆପଣଙ୍କୁ ସୂଚେଇ ଦେଇଛି ଯେ, ମୋର ଆପଣଙ୍କ ସହିତ ନିର୍ଜନ ରାତିରେ ନିଭୃତ ସମ୍ପର୍କ ମୁଁ କାହା ଆଗରେ ପ୍ରକାଶ କରି ଆପଣଙ୍କ ସାମାଜିକ ପ୍ରତିଷ୍ଠା ଉପରେ ବିପଦ ସୃଷ୍ଟି କରିବି କି ? ଏଇ ଦ୍ୱିଧା ଆଉ ଭୟ, ଏପର୍ଯ୍ୟନ୍ତ ଆପଣଙ୍କଠାରୁ ମୋତେ ଦୂରେଇ ରଖିଛି । ଆପଣଙ୍କ ମନର ଉତ୍ତେଜନାକୁ ଶିଥିଳ କରିଦେଉଛି । ନାରୀ ଆଉ ପୁରୁଷର ମିଳନପଥ ପରିଷ୍କାର ଓ ଶଙ୍କାଶୂନ୍ୟ ହେବା ଉଚିତ ।

ସାକୀ ପାଖରେ ସୁରା ନଥିଲେ ପୁରୁଷ ମନରେ ଉତ୍ତେଜନା ସୃଷ୍ଟି ହୁଏନା, ଆଉ ଉତ୍ତେଜନାବିହୀନ-ପୁରୁଷ ପୁରୁଷ-ଗଣବାଚ୍ୟ ନୁହେଁ । ଗ୍ଲାସେ ମଦ; ଏଇମିତି ସମୟରେ ସେଇ ଅଭାବକୁ ପୂରଣ କରେ, ଆଉ ମନଭିତରର ଖାଲଢିପକୁ ସମାନ କରିଦିଏ ।

ଶାମୁକା ମୋତେ ତା' ସରଳ ଅଥଚ ଯୁକ୍ତିଯୁକ୍ତ ଭାଷାରେ ବୁଝାଉଥିଲା ଯେ—"ଡ୍ରିଙ୍କ୍ ଇଜ୍ ଏ ଗ୍ରେଟ୍ ଲେଭ୍‌ଲର୍" ଆଉ ଯୁବକ-ଯୁବତୀଙ୍କ ମନଖୋଲା ମିଳନ ପାଇଁ ମଦର ଆବଶ୍ୟକତା ଅଛି । ସେ ଯୌନସମ୍ପର୍କ ପୂର୍ବରୁ ମଦର ଆବଶ୍ୟକତା ଉପରେ କହୁଥିଲାବେଳେ ମୋର ମନେପଡ଼ୁଥିଲା—ରତିଶାସ୍ତ୍ରର ଲେଖକ ଋଷି ବାତ୍ସାୟନଙ୍କ ମତବାଦ ଉପରେ । ଋଷି ବାତ୍ସାୟନ ତାଙ୍କ ଶାସ୍ତ୍ରରେ ପରିଷ୍କାର ଭାବେ କହିଛନ୍ତି ଯେ, "ଯୁବକ-ଯୁବତୀଙ୍କ ମନଖୋଲା ରତିକ୍ରୀଡ଼ା ପାଇଁ ସୋମରସ ପାନକରିବା ବିଧେୟ । ଆବଶ୍ୟକୀୟ ସୋମରସ ପାନକଲେ, ନିଜ ମନଭିତରେ କେଉଁ ଇନ୍‌ହିବିସନ୍ ଥାଏ ତା' ଦୂରହୋଇଯାଏ ଆଉ ମନଖୋଲା ରତିକ୍ରୀଡ଼ାରେ ସାହାଯ୍ୟ କରେ ।"

ଶାମୁକାର ରତିକ୍ରୀଡ଼ା ଆଉ ସୋମରସ (ମଦ)କୁ ନେଇ ଅକାଟ୍ୟ ଯୁକ୍ତି, ମଦ ନପିଇ ମଧ୍ୟ ମୋତେ ନିଶା ଧରିଆସୁଥିଲା । ମାତ୍ର ସେ ନିଶା ତା' ସଙ୍ଗେ ରତିକ୍ରୀଡ଼ା କରିବାକୁ ନୁହଁ, ତା' ଭିତରେ ଲୁଚିରହିଥିବା ଅଜ୍ଞାତ ଭାବଧାରାକୁ ଜାଣିବା ପାଇଁ । ସାଧାରଣ ଜଣେ ରୂପଜୀବୀ ଏବଂ ଶାମୁକା ଭିତରେ ଯଥେଷ୍ଟ କିଛି ତଫାତ୍ ଥିଲାଭଳି ମୁଁ ଅନୁଭବ କରୁଥିଲି ।

ମୋତେ ଚିନ୍ତିତ ଦେଖି ଶାମୁକା କହିଥିଲା—"ହଉ, ଆଜି ତ ମୋ ସଙ୍ଗେ ନୂଆ ଦେଖା । ମୁଁ ତ କୁଆଡ଼େ ଚାଲିଯାଉନି କି ଆପଣ ବି ଏତେ ଚଞ୍ଚଳ ଯାଉ-ନାହାନ୍ତି ।" ଶାମୁକା କଥାରେ ବାଟବୁଲା ବାଜୁ ନଥାଏ । ଏତିକ କହିଲା ପରେ ସେ ମୋ ଆଡ଼କୁ ଚାହିଁ କହିଲା, "ବୋଧେ ମୋ ଉପରେ ଆପଣ ସନ୍ତୁଷ୍ଟ ନୁହଁନ୍ତି—ମୋ କଥାର ଉତ୍ତର ମଧ୍ୟ ଆପଣ ଦେଉନାହାନ୍ତି—ତାହାହେଲେ ମୁଁ ଯାଉଛି ।" ଏତିକ କହି ଶାମୁକା ଠିଆ ହେଲା—ତାରି ଆଲୁଅରେ ତା' ମୁହଁ ଭଲଭାବେ ଦିଶୁନଥିଲା ମାତ୍ର ମୁଁ ଅନୁଭବ କରିଥିଲି ସତେ ଯେପରି ତା' ମୁହଁରେ ଅବ୍ୟକ୍ତ ଯନ୍ତ୍ରଣାକୁ ନେଇ ସେ ଫେରିଯିବା ପାଇଁ ଉଦ୍ୟତ ହେଉଛି । ଶାମୁକା ତା' ଶ୍ରେଷ୍ଠ ଟରକସ୍ ଟାର୍ଚ୍ଚଲାଇଟ ଧରି ବାହାରିଲା ଶିଡ଼ିଧରି ତଳକୁ ଓହ୍ଲାଇବା ପାଇଁ । ହଠାତ୍ ଏକ ଅଜଣା ଆବେଗରେ ମୋର ପାଟିରୁ ବାହାରିଥିଲା "ଶାମୁକା…ଶୁଣ ।"

ଅନ୍ଧକାର ଛାତ ଉପରେ ଶାମୁକାର ଛାୟାମୂର୍ତ୍ତି ଫେରି ଚାହିଁଲା । ମୋ ଡାକରାରେ ସେ ଫେରିଥିଲା ପୁଣି ମୋ ପାଖକୁ । ପାଖରେ ଠିଆ ହୋଇ ପଚାରିଥିଲା "କ'ଣ ହେଲା, କୁହନ୍ତୁ ।" ମୁଁ ବସିବାକୁ କହିଲା ପରେ ସେ ପୁଣି ବସିଲା ।

( ୨ )

ସେଦିନ, ସେଇ ରାତିରେ ଶାମୁକା ତା'ଅତୀତ ଜୀବନର ଇତିହାସ ଶୁଣାଇ-ଥିଲା । ଅନୁଗୁଳ ସବ୍‌ଡ଼ିଭିଜନ୍‌ର ଏକ ଅଖ୍ୟାତ ପଲ୍ଲୀ ଗାଁରେ ତା' ଘର । ତାକୁ ଯେତେବେଳେ ୧୨ ବର୍ଷ, ତା' ମା'ଙ୍କର ମୃତ୍ୟୁ ଘଟିଥିଲା । ମା' ମଲାପରେ ଦରବୁଢ଼ା ବୟସରେ ବାପା ଆଉଥରେ ବାହା ହୋଇଥିଲେ । ସାବତମା', ସେ, ଆଉ ସାବତ-ମା'ଙ୍କ ଶ୍ରେଷ୍ଠପୁଅ । ଗୃହୀଘରର ଝିଅ ଶାମୁକା ପାଖ ଗାଁ ମାଇନର ସ୍କୁଲକୁ ପାଠ ପଢ଼ିବାକୁ ଯାଉଥିଲା । ପାଠ ପଢ଼ିବାରେ ତା'ର ପ୍ରବଳ ଇଚ୍ଛାଥିଲେ ମଧ୍ୟ ସାବତମା' ଥିଲା ତା'ର ବିରୋଧୀ । ମା'ର ତାଡ଼ନା ସତ୍ତ୍ୱେ ସେ ପାଠ ପଢ଼ୁଥିଲା, ମାତ୍ର ମାଇନର ପରେ ସେ ଘରେ ଥିଲା ଘରକାମ କରିବା ପାଇଁ ।

ଗାଁରେ ସେ ଥିଲା ତା' ବୟସର ଝିଅମାନଙ୍କ ମଧ୍ୟରେ ସୁନ୍ଦରୀ ଶିକ୍ଷିତା । ସମସ୍ତେ ତାକୁ ଭଲପାଆନ୍ତି, ଭଲମନ୍ଦରେ ଡାକନ୍ତି କିନ୍ତୁ ସାବତମା' ଆଖିରେ ଏହାକୁ

ଯାଏନା । ଘରର ସବୁକାମ ନିର୍ବିକାରଭାବେ କରିବାପରେ ବି ସେ ତାଙ୍କଠାରୁ ଗାଳି ଭର୍ତ୍ସନା ଶୁଣେ । ଘରକାମ ସବୁ ସେ କରୁଥିଲାବେଳେ, ସାବତମା' ବୁଲିଯାଏ । ବାପା ନଥିଲାବେଳେ ସେଇ ଗାଁର ତାଙ୍କ ରଙ୍କଦାଦାଙ୍କ ସଙ୍ଗେ ଘଣ୍ଟା ଘଣ୍ଟା ଧରି କଥାବାର୍ତ୍ତାରେ ସମୟ କାଟେ । ରଙ୍କଦାଦା ମା'ଙ୍କୁ ଦିନେ ନଦେଖିଲେ ବାଉଳା ହୁଅନ୍ତି । ବାପା ଏ କଥା ଜାଣିଥିଲେ ମଧ୍ୟ ମା'ଙ୍କ ଉପରେ କିଛି କହୁନଥିଲେ । ରଙ୍କଦାଦାଙ୍କ ସଙ୍ଗେ ମା'ର ସମ୍ପର୍କ ଦିନକୁଦିନ ବଢ଼ିବାରେ ଲାଗିଲା । ଗାଁ ଲୋକେ ବାରକଥା ଲଗେଇ ଲଗେଇ ରଙ୍କଦାଦା ଆଉ ମା'ଙ୍କ ନାଁରେ କହିବୁଲିଲେ ।

ବାପା ଏକଥା ଶୁଣିଲା ପରେ ବହୁଥର ମା'ଙ୍କୁ ତାଗିଦ୍ କରୁଥିଲେ, ହେଲେ ମା' ତାଙ୍କ କଥାକୁ ଭ୍ରୂକ୍ଷେପ କରୁନଥିଲେ । ବରଂ ସାବତମା' ତା' ନାଁରେ ବାପାଙ୍କ ଆଗରେ ଆପତ୍ତି ଉଠାଇଥିଲେ ଯେ, ସେ ଆଉ ଗାଁ ଗଉଡ଼ନାୟକ ଘର ପୁଅ ସଙ୍ଗେ ସବୁଦିନ ସନ୍ଧ୍ୟାବେଳେ ପାହାଡ଼ତଳେ ଆମ୍ବତୋଟାରେ ଦେଖାସାକ୍ଷାତ କରୁଛି । ପାଠ ପଢ଼ିଛି ବୋଲି ଚିଠି ଲେଖୁଛି, ଏମିତି କେତେ କଥା । ମା' କଥାକୁ ତା' ବାପା ବିଶ୍ୱାସ କରି ଦିନେ ତାକୁ ହାତଗୋଡ଼ ବାନ୍ଧି ମାରିଥିଲେ । ସେ ଯେତେ କହିଲେ ବି ତା' କଥାକୁ ବିଶ୍ୱାସ କରିନଥିଲେ । ମା'ଛେଉଣ୍ଡ ଯୁବତୀଟିର କୋମଳ ମନରେ ଆଘାତ ଲାଗିଥିଲା ।

ଅଯଥାରେ ବାପା ତାକୁ ଅବିଶ୍ୱାସ କରି ମାଡ଼ଦେବା ଯୋଗୁଁ ସେ ତାଙ୍କ ଉପରେ ଅଭିମାନ କରି କଥା କହୁନଥିଲା । ଦିନେ ସକାଳୁ ମା'ର ବୁକୁଫଟା କାନ୍ଦଣାରେ ତା' ନିଦ ଭାଙ୍ଗିଯାଇଥିଲା । ତା' ଶୋଇବା ଘରୁ ଉଠି ସେ ଦେଖିଲା ଦୁଆରମୁହଁରେ ମା' ଡକାପକାଇ କାନ୍ଦୁଛନ୍ତି । ବାପା ତାଙ୍କ ଶୋଇବା ବିଛଣା ଉପରେ ପଡ଼ିଆନ୍ତି । ତାଙ୍କ ମୁହଁରୁ ଧଳା ଧଳା ଫେଣ ବାହାରୁଥାଏ । ପାଖରେ ଗୋଟେ ପିତଳଗ୍ଲାସ ଥୁଆ ହୋଇଥାଏ । ସେ ବାପାଙ୍କ ପାଖକୁ ଯାଇ ଦେଖେ ଯେ ବାପା ମରିଯାଇଛନ୍ତି, ତାଙ୍କ ପାଟିରୁ ଗରଳ ବାହାରୁଥାଏ ।

ତାକୁ ବାପାଙ୍କ ଘରେ ପଶିବା ଦେଖି, ମା' ଡକାପକାଇ କାନ୍ଦୁଥାଏ— "ଆଲେ, ବାପାକୁ ବିଷଦେଇ ମାରି କି ଯଶ ପାଇଲୁ", ଏମିତି କେତେ କଥା । ତାଙ୍କ କାନ୍ଦଣା ଭିତରେ ସେ ଜଣେଇ ଦେଉଥା'ନ୍ତି ଯେ, ବାପା ତାକୁ ମାରିଥିବା ହେତୁ ସେ ତା' ବାପାକୁ ବିଷ ଦେଇଦେଇଛି । ବାପାଙ୍କ ମଲାଦେହ, ତାକୁ ଅଭିଯୁକ୍ତ କରି ମା'ଙ୍କ କାନ୍ଦଣାରେ ସେ ହତବାକ୍ ହୋଇଯାଇଥିଲା । ତା' ଆଖିରୁ ଲୁହ ଆସିନଥିଲା କି ପାଟିରୁ କଥା ବାହାରି ନଥିଲା । ଗୁହୁଁ ଗୁହୁଁ ଗାଁଟିଯାକର ମାଇପେ, ମରଦ ସମସ୍ତେ ଜମାହେଲେ । ସମସ୍ତେ ତା' ମୁହଁକୁ ଗୁହିଁ ବିଶ୍ୱାସ କଲେ ମା'ଙ୍କୁ ।

ପୁଲିସ୍ ଖବର ପାଇ ହତ୍ୟାକାଣ୍ଡ ତଦନ୍ତ ପାଇଁ ତା' ଗାଁକୁ ଆସିଲେ । ବାପାଙ୍କ ଶବ ଡାକ୍ତରଖାନାକୁ ଗଲା । ତାଙ୍କ ବିଛଣା ପାଖରେ ପଡ଼ିଥିବା ପିତ୍ତଳ ଗ୍ଲାସକୁ ପୁଲିସ ଜବତ କଲେ । ମା'ଙ୍କର ଷ୍ଟେଟ୍‌ମେଣ୍ଟ ନେଲେ । ରଙ୍କଦାଦା ପୁଲିସ ଆଗରେ ତାଙ୍କ ଜମାନବନ୍ଦୀ ଦେଲେ । ମା' କହିଥିଲା ଯେ, ରାତିରେ ସେ ବାପାକୁ ଅଧଗ୍ଲାସେ ଦୁଧ ଦେଇଥିଲା ପିଇବା ପାଇଁ ଏବଂ ସେଇ ଦୁଧରେ ସେ ବିଷ ମିଶାଇଥିଲା ।

ପୁଲିସ ତା'ଠାରୁ ଜମାନବନ୍ଦୀ ନେଲାବେଳେ ସେ କିଛି କହିପାରିନଥିଲା । କ'ଣ କହିବ, ସେ ବାପାଙ୍କୁ ବିଷ ଦେଇଛି ବୋଲି ମା', ରଙ୍କଦାଦା ସମସ୍ତେ କହୁଛନ୍ତି । ଅନ୍ୟମାନେ ସନ୍ଦେହ କରୁଛନ୍ତି । ସେ ବାପାଙ୍କ ସଙ୍ଗେ କଥା କହୁନଥିଲା । ପୁଲିସ ଗ୍ଲାସ୍‌କୁ ଜବତ୍ କରିଥିଲା ଏବଂ ସେଇ ଗ୍ଲାସ୍ ଦେହରୁ ତା'ର ଟିପଚିହ୍ନ ବାହାରିଥିଲା ।

ବାପାଙ୍କୁ ବିଷଦେଇ ହତ୍ୟା କରିଥିବା ଅପରାଧରେ ସେ ଆରେଷ୍ଟ ହୋଇ ଜେଲ୍‌ଗଲା । ବିଚାର ପରେ ହତ୍ୟାକାଣ୍ଡର ମୁଦାଲାଭାବେ ଜଜ୍‌ସାହେବ ତାକୁ ଆଜୀବନ ସଶ୍ରମ କାରାଦଣ୍ଡ ଦେଲେ । ତା' ବିରୁଦ୍ଧରେ ଅକାଟ୍ୟ ଯୁକ୍ତିଥିଲା ଯେ, ଯେଉଁ ବିଷଗ୍ଲାସ୍ ବାପାଙ୍କ ମୃତ୍ୟୁଶଯ୍ୟା ପାଖେ ପଡ଼ିଥିଲା, ସେଇ ଗ୍ଲାସ୍ ଦେହରୁ ବାହାରିଥିବା ଆଙ୍ଗୁଠି ଗ୍ରୁପ ତା' ଆଙ୍ଗୁଠି ଗ୍ରୁପ ସଙ୍ଗେ ମିଶିଥିଲା । ଏଇ ଅକାଟ୍ୟ ପ୍ରମାଣ ଯୋଗୁଁ ଜଜ୍‌ସାହେବ ତାକୁ ଦଣ୍ଡାଦେଶ ଦେଲେ । ଜଜ୍‌ସାହେବଙ୍କ ଆଦେଶ ବିରୁଦ୍ଧରେ ସେ ବା ଆଉ କାହାକୁ କହନ୍ତା ? ପିତୃହତ୍ୟାକାଣ୍ଡରେ ଦଣ୍ଡିତ ହୋଇ ଯୁବତୀ ଶାମୁକା ଆସିଥିଲା ଜେଲ୍‌କୁ । ଜେଲ୍ ଦଣ୍ଡଭୋଗ କରିବାକୁ । କୋର୍ଟର ଦଣ୍ଡାଦେଶକୁ ସେ ମୁଣ୍ଡପାତି ସହିନେଇଥିଲା । ପଦେହେଲେ ପ୍ରତିବାଦ କରିନଥିଲା, କରିଥିଲେ ବା କିଏ ବିଶ୍ୱାସ କରିଆନ୍ତା ନା ଶୁଣିଆନ୍ତା ?

( ୩ )

ଜେଲ୍‌ଜୀବନ ଆସ୍ତେ ଆସ୍ତେ ଆରେଇ ଯାଇଥିଲା । ଯେଉଁଠି ସମସ୍ତେ ବିଭିନ୍ନ ଦୋଷରେ ଦୋଷୀ ସାବ୍ୟସ୍ତ ହୋଇ ଦଣ୍ଡ ଭୋଗକରୁଛନ୍ତି, ସେଇଠି କିଏ କାହା କଥା ପଚାରେ । ପିତୃ ହତ୍ୟାକାରିଣୀ ଲୋକ ଅପବାଦରୁ ବହୁ ଦୂରରେ ରହିଥିଲା ଶାମୁକା । ଜେଲ୍ ଭିତରେ ତା' ମୁହଁକୁ କେହି ସନ୍ଦେହ ଚକ୍ଷୁରେ ଦେଖୁନଥିଲେ । ବରଂ ତା'ର ସେଇ ବୟସରେ ଜେଲ୍‌ଦଣ୍ଡକୁ ଅନୁକମ୍ପାର ଦୃଷ୍ଟିରେ ଦେଖୁଥିଲେ ।

ଜେଲ୍‌ର ନିଃସଙ୍ଗ ଜୀବନର ତା'ର ଏକମାତ୍ର ସାଥି ଥିଲି ପ୍ରୌଢ଼ା ମହିଳା ଓ୍ୱାର୍ଡ଼ର, ବୟସ ପଚିଶ ପାଖାପାଖି । ସେ ଜେଲ୍ ଦଣ୍ଡଭୋଗ କରୁଥିବାବେଳେ ଜେଲ୍ ଭିତରେ ଆଉ କେହି ମହିଳା ଅପରାଧିନୀ ନଥିଲେ । ସକାଳୁ ସନ୍ଧ୍ୟାପର୍ଯ୍ୟନ୍ତ ଜେଲ୍ ଭିତରେ ଜେଲ୍ ଓ୍ୱାର୍ଡ଼ର ଆଉ ସେ ମହିଳା କଏଦୀ । ଦୁଇଜଣ ମହିଳା । ଦୁଃଖସୁଖ ସବୁକିଛି ଶାମୁକା ତାଙ୍କର ସାଙ୍ଗରେ ହୁଏ । ଜୀବନର କେତେ କଥା ଶାମୁକାକୁ ପ୍ରୌଢ଼ା ଓ୍ୱାର୍ଡ଼ର ପଚାରିଛନ୍ତି, ମାତ୍ର ସେ କିଛି ପ୍ରକାଶ କରିନଥିଲି । କରିଥିଲେ ବା ଲାଭ କ'ଣ ହୋଇଥାନ୍ତା ? ମାତ୍ର ମହିଳା ଓ୍ୱାର୍ଡ଼ର କହିଥିଲେ ଯେ, ଜେଲ୍ ଭିତରେ ଭଲ ବ୍ୟବହାର ଏବଂ କାର୍ଯ୍ୟ କଲେ ଜେଲର୍‌ସାହେବ ବର୍ଷକେ କେତେଦିନ ଦଣ୍ଡାଦେଶ ରେମିସନ୍ ଦେବାର ଅଧିକାର ଅଛି । ଦଣ୍ଡାଦେଶ ଶେଷ ପୂର୍ବରୁ ସେ ମଧ୍ୟ ଖଲାସ ହୋଇଯାଇପାରିବ । କିଏ ବା ନଚାହେଁ ଜେଲ୍‌ଖାନାରୁ ମୁକ୍ତ ହେବାପାଇଁ ?

ଜେଲର୍‌ସାହେବଙ୍କ ସରକାରୀ ଘର ଜେଲ୍‌ଖାନା ପରିସର ମଧ୍ୟରେ । ନୂଆ ହୋଇ ଦାସ ସାହେବ ଜେଲର୍ ହୋଇ ଆସିଥା'ନ୍ତି । ବୟସ ତିରିଶ କି ବତିଶ ହେବ । ସୁନ୍ଦର, ସ୍ୱାସ୍ଥ୍ୟବାନ୍ ଯୁବକ । କଥାବାର୍ତ୍ତା, କଏଦୀମାନଙ୍କ ସଙ୍ଗେ ବ୍ୟବହାରରେ ସେ ସମସ୍ତଙ୍କ ନଜର କରିପାରିଥିଲେ । ଦାସ ସାହେବଙ୍କ ପିଲାମାନେ ଆସି ନଥାନ୍ତି । ଗାଁରେ ତାଙ୍କ ବାପାଙ୍କ ଦେହ ଅସୁସ୍ଥ କାରଣରୁ ମେମ୍‌ସାହେବ ଗାଁରେ କିଛିଦିନ ପାଇଁ ରହୁଥିଲେ । ମହିଳା ଓ୍ୱାର୍ଡ଼ର ବେଳେବେଳେ ତାଙ୍କ ଘରଆଡ଼େ ଯାଇ ଘରବାର ଦେଖିଆସୁଥିଲେ । କଏଦୀଙ୍କ ମଧ୍ୟରୁ କେତେବେଳେ କେମିତି ଜଣେ ଦି'ଜଣ କାମକରି ଫେରିଆସନ୍ତି । କଏଦୀମାନେ ଜେଲରମାନଙ୍କ ଘରେ କାମ କରିବା କୁଆଡ଼େ ଆଇନରେ ଅନୁମୋଦିତ ।

ମହିଳା ଜେଲ୍‌ଓ୍ୱାର୍ଡ଼ର ଶାମୁକା ସଙ୍ଗେ ଦୁଃଖ ସୁଖ ହୋଇ ଜେଲର୍‌ବାବୁଙ୍କ ଘରେ ତା' ସଙ୍ଗେ କାମ କରିବାକୁ ନେଇଯାଇଥିଲି । ଘରକାମ ଭିତରେ ଜେଲର୍ ସାହେବଙ୍କ ପାଇଁ ରୋଷେଇ କରିବା, ଲୁଗା ସଫାକରି ରଖିବା କାମ କରିବାକୁ ପଡ଼ୁଥିଲା । ଏସବୁ କାମ କରିବାରେ ତା'ର ଯଥେଷ୍ଟ ଆଗ୍ରହ ଥିଲା । ବହୁଦିନରୁ ଜେଲର ଗୋଟିଏ କୋଣରେ ପଡ଼ି ପଡ଼ି ସେ ଅନୁଭବ କରିଥିଲି ଯେପରି ତା' ହାତ ରହିଯାଇଥିଲା । ଶାମୁକା କହିଥିଲା—ଜଣେ ନାରୀହିସାବରେ, ନାରୀସୁଲଭ କାମ ମୋତେ ଯେତେବେଳେ ଜେଲର୍‌ଙ୍କ ଘରେ କରିବାର ସୁବିଧା ମିଳିଲା, ମୁଁ ସବୁ ଭୁଲିଯାଇ ମନଦେଇ କାମ କରିଯାଉଥିଲି । ମୋ ମନଭିତରେ କିଛି ପାଇବାର ଆଶା ନଥିଲା, ଥିଲା କେବଳ ସ୍ତ୍ରୀସୁଲଭ ଘରକରଣା କାମ ଯାହାସବୁ ମୁଁ କିଛିବର୍ଷ ଧରି ଭୁଲିଯାଇଥିଲି ତାହାହିଁ କରିବା ପାଇଁ ।

ମୁଁ ଜେଲର୍‌ଙ୍କ ଘରେ କାମ କଲାବେଳେ, ମହିଳା ୱାର୍ଡ଼ର ମୋତେ ଏକା ଛାଡ଼ିଦେଇ ଚାଲିଯାଏ । ମୋ ଉପରେ ତା'ର ଅଗାଧ ବିଶ୍ୱାସ ଥିଲା । ସକାଳ କାମ ସାରି ମୁଁ ଫେରିଯାଏ ଜେଲ୍‌କୁ । ପୁଣି ଉପରବେଳା ଆସେ, କାମସାରି ଫେରିଯାଏ ସନ୍ଧ୍ୟା ପୂର୍ବରୁ ।

ମୁଁ ଜାଣେନା, ମୋ ଅଲକ୍ଷ୍ୟରେ ଲକ୍ଷ୍ୟ କରୁଥିଲେ ଜେଲର୍ ସାହେବ । ସକାଳଓଳି ଅଫିସ୍ ସାରି ଘରକୁ ଫେରିଲାବେଳେ ମୋତେ କହନ୍ତି ଖାଇବାକୁ ବାଢ଼ିଦେବା ପାଇଁ । ମୁଁ ବାଢ଼ିଦିଏ, ସେ ଖାଆନ୍ତି । ସେ ଖାଇବାବେଳେ ମୁଁ ଅନୁଭବ କରୁଥିଲି ମୁଁ ଯେପରି ଘରେ ଅଛି । ଆନନ୍ଦରେ ମୋ ମନ ଭରିଯାଉଥିଲା । ଜେଲର୍ ବାବୁଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା, ଭକ୍ତି ଆସୁଥିଲା ।

ମୋ କାମରେ ଜେଲର୍ ବାବୁ ଖୁସିହୋଇ ଖାଇବସିବାବେଳେ ଘରକଥା ସବୁ ପଚାରନ୍ତି । ଘରକଥା ପଚାରିଲାବେଳେ ମୋ ଆଖିରେ ଲୁହଛଡ଼ା ସେ ଆଉ କିଛି ଦେଖୁନଥିଲେ । ସହାନୁଭୂତି ଦେଖାଇ ସେ ବେଳେବେଳେ ମୋ ହାତଧରି ବସାଇ ଦିଅନ୍ତି, ତାଙ୍କ ପାଖେ ଖାଇବାପାଇଁ ବାଧ୍ୟ କରନ୍ତି ।

ତାଙ୍କର ମୋ ପ୍ରତି ସ୍ନେହ, ଶ୍ରଦ୍ଧା ମୋ ମନଭିତରେ ଏକ ଅନ୍ୟରୂପ ଧାରଣକରିଥିଲା ମାତ୍ର ସେ ମୋ ମନ କଥାକୁ ଅନ୍ୟପ୍ରକାର ବୁଝିଥିଲେ । ଦିନେ ତାଙ୍କୁ ଖାଇବାକୁ ଦେଇସାରିଲା ପରେ ସେ ମୋତେ ତାଙ୍କ ଶୋଇବାଘରକୁ ଡାକିଥିଲେ । ସ୍ନେହରେ ମୋତେ ତାଙ୍କ ଖଟ ଉପରେ ବସାଇଥିଲେ, ଆଦରରେ ମୋ ହାତକୁ ତାଙ୍କ ହାତ ଭିତରେ ରଖିଥିଲେ । ମୁଁ ମୁଗ୍ଧ ହୋଇ ତାଙ୍କ ମୁହଁକୁ ଚାହିଁଥିଲି । ମାତ୍ର ସେ ମୋ ମନକଥା କ'ଣ ବୁଝିଲେ କେଜାଣି ତାଙ୍କ ଛାତିଉପରକୁ ମୋତେ ଟାଣିନେଇଥିଲେ, ମୁଁ କିଛି କହିପାରିନଥିଲି । ନାରୀଜୀବନର ଶ୍ରେଷ୍ଠ ସମ୍ପତ୍ତି ସେଇଦିନ ତାଙ୍କ ଖଟଉପରେ ହରାଇବସିଲି ।

ତାଙ୍କ ଘରୁ ଜେଲର ମହିଳା ସେଲ୍‌କୁ ଫେରିଲାବେଳେ ସେହି କଥାକୁ ବହୁବାର ଭାବିଥିଲି । ଜେଲର୍ ସାହେବଙ୍କ ଉପରେ ରାଗିଥିଲି ଏବଂ ଅଭିମାନ କରିଥିଲି ମାତ୍ର ପରମୁହୂର୍ତ୍ତରେ ଯେତେବେଳେ ମୋ ପରିସ୍ଥିତି ମୋତେ ସୁଚାଇ-ଦେଇଥିଲା ଯେ, ମୁଁ ଜଣେ ଆଜୀବନ ଦଣ୍ଡାଦେଶ ପାଇଥିବା କଏଦୀ, ଜେଲ୍‌ଭିତରେ ଜୀବନ କଟିବ, ବାହାର ଆଲୋକ ମୋତେ କେବେ ସ୍ପର୍ଶକରିବ ମୁଁ ଜାଣିନଥିଲି । ଜଣେ ପୁରୁଷ ତା'ର ଏତେ ସ୍ନେହ, ମମତା ଦେଇ ମୋତେ ଭଲପାଉଛି । କଏଦୀ ହୋଇ ବି କଏଦୀକୁ ଏତେ ସୁବିଧାସୁଯୋଗ ଦେଇ ମୋ ଜୀବନକୁ ଯେଉଁ କ୍ଳେଶ ଘାରିଛି ତାକୁ

ଲାଘବ କରୁଛି । ତା'ଛଡ଼ା ମୁଁ ଜେଲ୍‌ରୁ ଫେରିଲାବେଳକୁ ମୋତେ କିଏ ବା ଗ୍ରହଣ-କରିବ ତା' ସଙ୍ଗେ ଘରସଂସାର କରିବାକୁ । ଯୌବନର ସମସ୍ତ ଦିନ ଏଇ ନିର୍ଦ୍ଦୟ ଜେଲ୍‌ଭିତରେ ହିଁ କଟିବ । ଏ ସମସ୍ତ ଅପେକ୍ଷା ଯୁବକ ଜେଲର୍‌ବାବୁଙ୍କ ସ୍ନେହ, ଶ୍ରଦ୍ଧା, ପୁରୁଷତ୍ୱର ସ୍ପର୍ଶ ମୋ ପକ୍ଷରେ କ'ଣ ଗ୍ରହଣୀୟ ନଥିଲା ? ସବୁକଥାକୁ ସ୍ୱୀକାର କରି ମୁଁ ଜେଲର୍‌ସାହେବଙ୍କ ଘରକୁ ଗଲି । ମୋ ମୁହଁରେ ଦୁଃଖ ନଥିଲା, କ୍ଷୋଭ ନଥିଲା. ପରଦିନ ଜେଲର୍‌ସାହେବଙ୍କ ସଙ୍ଗେ ଦେଖାହେଲା ପରେ ମୁଁ ଲାଜସରମରେ ଝାଉଁଳିପଡ଼ୁଥିଲି । ମୋ ଦେହରେ ନାରୀସୁଲଭର ସମସ୍ତ ଲକ୍ଷଣ ପ୍ରକାଶ ପାଉଥିଲା । ଜେଲର୍‌ସାହେବ ଅତ୍ୟନ୍ତ ଖୁସିହୋଇ ମୋତେ କୋଳାଗତ କରିଥିଲେ । ସେଇ-ଦିନରୁ ମୁଁ ପ୍ରାୟ ତାଙ୍କ ଘରେ ରୁହେ, ଦିନରେ ଏବଂ ରାତିରେ ବି । ଜେଲ୍‌ର ସମସ୍ତ ଆଇନ ମୋ ପାଇଁ କୋହଳ ହୋଇଯାଇଥିଲା ।

କେତେଦିନ ଏମିତି ଆନନ୍ଦରେ କଟିଥିଲା । କେହି କହିବାକୁ ନଥିଲେ । ମହିଳା ୱାର୍ଡ଼ର ସବୁ ଜାଣେ । ତା' ପାଇଁ ଏପରି ଘଟଣା ଜେଲରେ କିଛି ନୂଆ ନୁହେଁ । ତେଣୁ ସେ କିଛି ଗୁରୁତ୍ୱ ଦେଇ ଦେଖୁନଥିଲା ବରଂ ଆଖିବୁଜି ସବୁ ଦେଖି ନଦେଖିଲା ପରି କାମ କରୁଥିଲା । କିଛିଦିନ ପରେ ସେ ମୋ ଦେହର ଲକ୍ଷଣ ଦେଖି ମୋତେ ଚୁପ୍‌କରି କହିଥିଲା ଯେ, ମୁଁ ମା' ହେବାକୁ ଯାଉଛି । ତା' କଥା ଶୁଣି ମୋ ମୁଣ୍ଡ ଘୂରିଯାଇଥିଲା । ମୁଁ ହତବାକ୍ ହୋଇ ବସିପଡ଼ିଥିଲି । ଜେଲର୍‌ସାହେବ କେତେବେଳେ ଆସିଲେ ମୁଁ ଜାଣିନଥିଲି ।

ଅଳ୍ପଦିନ ପରେ ଜେଲ୍ ଡାକ୍ତରଙ୍କ ସଙ୍ଗେ ପରାମର୍ଶ କରି ଜେଲର୍‌ସାହେବ ମୋତେ କଟକ ନେଇଥିଲେ । ମୋର ପରିଚୟ ସେ କ'ଣ ଦେଇଥିଲେ ମୁଁ ଜାଣେନି । ମୋର ଗର୍ଭ ନଷ୍ଟକରି ମୁଁ ସେଇ ରାତିରେ ତାଙ୍କ ସଙ୍ଗେ ଫେରିଆସିଥିଲି । କିଛିଦିନ ଜେଲ୍ ଡାକ୍ତରଙ୍କ ଚିକିତ୍ସାରେ ରହିଲା ପରେ ସୁସ୍ଥ ହେଲି ।

ମୁଁ ସୁସ୍ଥହେଲା ପରେ ଜେଲର ସାହେବଙ୍କ ସ୍ତ୍ରୀ ଓ ପିଲାମାନେ ଆସିଥିଲେ, ତେଣୁ ମୋତେ ଆଉ ତାଙ୍କ ଘରକୁ ଯିବାକୁ ପଡ଼ୁନଥିଲା । ସାହେବ ଜେଲ୍ ପରିଦର୍ଶନରେ ଆସିଲାବେଳେ ମୋ ସେଲ୍‌ରେ ତାଙ୍କୁ ଦେଖି ମୋ ଆଖିରୁ ଲୁହ ବୁହେ । ସେ ଦୂରରୁ ଦେଖି ଫେରିଯାଆନ୍ତି । କିଛିଦିନ ପରେ ସେ ଜେଲର୍‌ସାହେବ ବଦଳି ହୋଇ ଅନ୍ୟ ଆଡ଼େ ଚାଲିଗଲେ । ଗଲାବେଳେ ସେ ସେଲ୍ ଦୁଆରେ ଠିଆ ହୋଇଥିଲେ । ତାଙ୍କ ଆଖିର ଲୁହ ମୋ ଆଖିରେ ଧରାପଡ଼ିଥିଲା ।

ଦୀର୍ଘ ବାରବର୍ଷ ପରେ ମୁଁ ଦିନେ ହଠାତ୍ ଜାଣିବାକୁ ପାଇଲି ଯେ, ମୋର ଜେଲଜୀବନ ଶେଷହୋଇ ଆସୁଛି । ମୋତେ ମୁକ୍ତି ମିଳିବ । ମୁକ୍ତି ମିଳିବା କଥା

ଶୁଣି, ମୁଁ ସେଦିନ ରାତିରେ ଜେଲ୍ କକ୍ଷରେ ମୂକହୋଇ ବସିରହିଥିଲି । ରାତିରେ ନିଦ ଆସି ନଥିଲା, ଖବରିଲି ମୁକ୍ତପାଇଲି ପରେ କୁଆଡ଼େ ଯିବି । ଗାଁରେ ମୋତେ କେହି ଚିହ୍ନିବେନି । ସାବତମା' ଦାଦା ସଙ୍ଗେ ଘର କରୁଥିବ । କେଉଁ ମୁହଁରେ ବା ଗାଁକୁ ଯିବି । ଜେଲ୍-ଜୀବନ ଭଲ । ସେ ସେଲ୍‌କୁ ଛାଡ଼ିଯିବା କଥା ମନେପଡ଼ିଲେ ମୋ ମନରେ କୋହ ଉଠୁଥିଲା । ମୁଁ ଆହୁରି ଅସହାୟ ମନେ କରୁଥିଲି ।

ଯେଉଁଦିନ ମୁଁ ଜେଲ୍‌ରୁ ମୁକ୍ତି ପାଇଲି, ସେଦିନ ମୋ ପାଖରେ ଦଶୋଟି ଟଙ୍କା ଥିଲା । ମହିଳାଓ୍ୱାର୍ଡ଼ର ମୋତେ ଗେଟ୍ ପାଖରେ ଅଶ୍ରୁଳ ନୟନରେ ବିଦାୟ ଦେଲି ପରେ, ସେଇ ଦଶଟଙ୍କାକୁ ପାଥେୟ କରି ମୁଁ ରାସ୍ତାକୁ ବାହାରିଲି । ଯେଉଁ ଯୁବତୀ ଥରେ ରାସ୍ତାକୁ ବାହାରେ, ସେ କ'ଣ ଆଉ ଘରକୁ ଫେରେ ? ରାତି ବେଶୀ ହେଲଣି, ଥଣ୍ଡା ଲଗିଲଣି, ଆପଣ ତଳକୁ ଆସନ୍ତୁ···ପୁଣି କେବେ ଦେଖା ହେଲେ ବାକି କଥା କହିବି । ଏତିକି କହି ଶାମୁକା ଛାତ ଉପରୁ ଶିଢ଼ିଦେଇ ତଳକୁ ଓହ୍ଲାଇଗଲା ।



# ଅନାଗତ ଭବିଷ୍ୟତ

ସକାଳୁ ଉଠିଲା ବେଳକୁ ମୋ ସାନଝିଅ ଚା' କପେ ଦେବା ସଙ୍ଗେ ସଙ୍ଗେ ସକାଳ ଇଂରାଜୀ ପତ୍ରିକାରେ ପ୍ରକାଶ ପାଇଥିବା ସମ୍ବାଦ ଉଦ୍ଧାର କରି କହୁଥିଲା ଯେ "The present world is going to meet an end soon." ବୈଜ୍ଞାନିକମାନେ କହିଲେଣି, ବର୍ତ୍ତମାନ ପୃଥିବୀର 'ଓଜୋନ ବାୟୁମଣ୍ଡଳ'ରେ ଯେଉଁପରି ଭାବେ ଗର୍ତ୍ତମାନ ଦେଖାଦେଲେଣି ଏବଂ ସେଇ ଗର୍ତ୍ତ ଯଦି ସମ୍ପ୍ରସାରିତ ହୁଏ ଏବଂ ତା ମଧ୍ୟଦେଇ ସୂର୍ଯ୍ୟକିରଣ ପୃଥିବୀ ମଧ୍ୟକୁ ପ୍ରବେଶ କରେ, ତାହେଲେ ସାଧାରଣ ଜୀବନଧାରଣ ଆଉ ସମ୍ଭବ ହେବନି । ଅଚିରେ ଆମର ଏହି ମାନବସମାଜ ପୃଥିବୀବକ୍ଷରୁ ଲୀନ ହୋଇଯିବ । ଝିଅ ପୁଣି କହୁଥିଲା ଯେ ଆମ ପୃଥିବୀପରି ମଙ୍ଗଳଗ୍ରହରେ ମଧ୍ୟ ଦିନେ ଜୀବଜଗତ ଥିଲା, ମାତ୍ର କାଳକ୍ରମେ ତାହା ଲୋପ ହୋଇଗଲା । ପୃଥିବୀର ବର୍ତ୍ତମାନର ଅବସ୍ଥା ସେଇଆଡ଼କୁ ଗତିକରୁଛି । ଅନ୍ୟପଟରେ ଓଡ଼ିଆ କାଗଜରେ ବାହାରିଥିବା ସମ୍ବାଦକୁ ଉଦ୍ଧାର କରି ସେ କହିଲା ଯେ 'Doom's Day' ପୁସ୍ତକର ଲେଖକ ଲେଖିଛନ୍ତି, ୯-୯-୧୯୯୯ ମସିହାରେ ପୃଥିବୀରେ ପ୍ରଳୟ ସୃଷ୍ଟି ହେବ ଏବଂ ଏଇ ପ୍ରଳୟ'ରେ ବର୍ତ୍ତମାନର ମାନବସମାଜ ଲୀନ ହୋଇଯିବ । ଚା' କପ୍‌ରୁ ଚା' ଶେଷ କରିସାରିବା ପରେ ମୁଁ ତାକୁ ପଚାରିଥିଲି ଯେ କଲେଜ ଯାଉଛୁ କି ନାହିଁ । ଝିଅ ମନରେ ଏକ ସନ୍ଦେହର କୁହେଳିକା । 'ଯଦି ପୃଥିବୀଟା ଆଉ ଅଳ୍ପଦିନ ମଧ୍ୟରେ ଧ୍ୱଂସ ହେବ, ପ୍ରଳୟରେ ଲୀନ ହୋଇଯିବ ଆଉ ଏତେ ପରିଶ୍ରମ କରି ଲାଭ କ'ଣ··· ।'

ତା' ମନରେ ସନ୍ଦେହର କୁହେଳିକା ଦେଖି ମୁଁ ମୋ ପିଲାଦିନର ଗୋଟିଏ ଅନୁଭୂତି ତା ଆଗରେ ବର୍ଣ୍ଣନା କରିଥିଲି ।

ମୁଁ ସେତେବେଳେ ନଆଳୀ ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ପଢ଼ୁଥାଏ । ଗାଁରୁ ସକାଳୁ ବାହାରି ପାଞ୍ଚ କିଲୋମିଟର ନଈ, ନାଳ, ବିଲ ପାରିହେଲେ ଯାଇ ସ୍କୁଲ । ପୁଣି ସ୍କୁଲପରେ ସେଇ ବିଲ, ନଈ, ନାଳ । ପ୍ରତ୍ୟେକଦିନ ସକାଳୁ ଯାହା ମିଳିଲା ଗଣ୍ଡେ ଅଟିକାନରେ ଗୁଞ୍ଜିଦେଇ, ଖଣ୍ଡେ ହାଫ୍‌ପ୍ୟାଣ୍ଟ ଉପରେ ହାଫ୍‌ସାର୍ଟ

ଏବଂ ବ୍ୟାଗ୍ ଭିତରେ ବହି ପୂରାଇ, ହାତରେ ଖଣ୍ଡେ ଛତାଧରି ବାହାରୁ ସ୍କୁଲଆଡ଼େ । ବର୍ଷାଦିନେ ବ୍ୟାଗ୍ ଭିତରେ ଖଣ୍ଡେ ଗୃହହାଡ଼ ଗାମୁଛା ଥାଏ । ଯେଉଁଠି ଦରକାର ପଡ଼େ ଗାମୁଛା ପାଳିଟି ନାଳ, ନଈ ପାରିହେଉ । ବର୍ଷାଦିନେ ଡିନ କିଲୋମିଟର ବାଟ ଡଙ୍ଗାରେ ଯିବାକୁ ପଡ଼େ ।

ଆମ ଗାଁରୁ ମୋ ସାଙ୍ଗରେ ଏବଂ ତଳ କ୍ଲାସ୍‌ରେ ପାଞ୍ଚ ଛ'ଜଣ ସେଇ ସ୍କୁଲରେ ପଢ଼ୁଥାନ୍ତି । ଆମେ ସମସ୍ତେ ସାଙ୍ଗହୋଇ ଯାଉ, ଆଉ ଫେରୁ । ଏତେ ଅସୁବିଧାରେ ଯାଉଥିଲେ ମଧ୍ୟ ସ୍କୁଲଯିବା ଆଉ ଫେରିବା ବାଟ ଆମ ପାଇଁ ଥିଲା ବେଶ୍ ଆନନ୍ଦଦାୟକ ସମୟ । ଡଙ୍ଗାରେ ପାରିହେଲା ବେଳେ 'ଆନନ୍ଦିଆ' କେଉଟ (ଡଙ୍ଗାବାଲା) ଡଙ୍ଗା ମଙ୍ଗରେ ବସି ଜାଲ ବୁଣୁ ବୁଣୁ ତା'ର ଅସରନ୍ତି ଗପର ମୁଣି ଖୋଲିଦିଏ । କୁମ୍ଭୀର ସଙ୍ଗେ ଲଢ଼େଇ, ଭୂତ ସଙ୍ଗେ ଭେଟ, ବାଘ ସଙ୍ଗେ ଲୁଚକାଳି ଖେଳ ଏମିତି କେତେ କଥା । ତା ସଙ୍ଗେ ସଙ୍ଗେ ଆମ ଉପରେ ତାଗିଦ୍, ଡଙ୍ଗାରେ ବସି ନଈ ଭିତରକୁ ହାତ ନଦେବା, କାତମାରି ନଜାଣି କାତ ଧରିବା, ଡଙ୍ଗା ଭଲଭାବେ କୂଳରେ ନଲାଗିବା ପୂର୍ବରୁ ଝପ୍‌ଝାପ୍ ଡେଇଁପଡ଼ିବା । ନଈବର୍ଷି ସମୟରେ ଆମେ ସବୁ ବହୁତ ମଜାକରୁ । ଭୋକଶୋଷ ଭୁଲିଯାଉ । ଡଙ୍ଗା ଯେତେବେଳେ ପ୍ରାଚୀ ନଦୀର କୂଳେ କୂଳେ ଅମ୍ବତୋଟା, ବାଉଁଶବୁଦା, ଗ୍ରେଟବଡ଼ ଜଙ୍ଗଲ ଦେଇ ଯାଉଥାଏ, ସେଇ ସମୟର ଦୁଇକୂଳ ଖାଉଥିବା ବର୍ଷିଲା ନଦୀର ତଅଁର ଭାଙ୍ଗିବା ଦୃଶ୍ୟ, ଦୂରରୁ ଭାସିଆସୁଥିବା ମାଛରଙ୍କା, ଅନ୍ୟ ପାଣିଚଢ଼େଇ-ମାନଙ୍କର କେଁକଟର ଶବ୍ଦ ମନ ମଧ୍ୟରେ ଯେଉଁ ଆନନ୍ଦ ସୃଷ୍ଟି କରେ, ଅନୁଭବୀ ଛଡ଼ା ଅନ୍ୟମାନେ ବୁଝିବା କଷ୍ଟ ।

ଶନିବାର ଦିନ ସକାଳୁ ସ୍କୁଲ ହୁଏ । ସେଇଦିନ ହିନ୍ଦୀ କ୍ଲାସ୍ ଥାଏ । ହିନ୍ଦୀଶିକ୍ଷକ ଦେବୀ ଦାଏ ସାର୍ ବଡ଼ କଡ଼ାସାର୍ । ହିନ୍ଦୀ ବହି ଭଲଭାବେ ପଢ଼ି ଉଚ୍ଚାରଣ କରି ନପାରିଲେ ଦୁଇପାପୁଲି ଯୋଡ଼ି ପଚିଶ ବେତ ଖାଇବାକୁ ପଡ଼େ । ପଚିଶ ବେତ ଖାଇଲାବେଳେ, ମଝିରେ ଯଦି ପାପୁଲି ଖୋଲିଯାଏ, ତାହେଲେ ପୁଣି ମୂଳରୁ ଆରମ୍ଭ ହୁଏ । ଏଇ ସାର୍‌ଙ୍କୁ ଆମର ଭାରି ଡର । ମୋ ସାଙ୍ଗ 'ପୀତବାସ' ହିନ୍ଦୀରେ ଏକ ନମ୍ବର ଗଧ । ପ୍ରତ୍ୟେକ କ୍ଲାସରେ ସେ ହାରାହାରି ୪୦ରୁ ୫୦ ବେତ ମାଡ଼ଖାଏ । ହିନ୍ଦୀ କ୍ଲାସକୁ ଯିବାକୁ ତା'ର ଭାରି ଡର । ଶନିବାର ଦିନ ଡଙ୍ଗାରେ ଆରପଟକୁ ପାରିହେଲା ପରେ, ପୀତବାସ ନାନା ଆଳ ବାହାର କରିବ । ଡେରି ହୋଇଗଲାଣି, ସାର୍ ମାଡ଼ଦେବେ, ଇତ୍ୟାଦି । ଦିନେ ଦିନେ ତା' କଥାରେ ପଡ଼ି ନଈକୂଳ, ଆମ୍ବତୋଟା ଜଙ୍ଗଲ ଭିତରେ ସ୍କୁଲକୁ ନଯାଇ 'ଲୁଚୁ' । ଜଙ୍ଗଲ ଭିତରେ ଠେକୁଆ ସଙ୍ଗେ ଗୋଡ଼େଇବା, ହରିଣ କେଉଁ

ଲଟାବୁଦାତଳେ ଛୁଆ ଜନ୍ମ କରନ୍ତି ଖୋଜିବା, ଜଙ୍ଗଲରୁ ନାନାରଙ୍ଗର କୋଳିତୋଳି ଖାଇବା, ଲୁଚୁକାଳି, ବୋହୁବୋହୁକା ଖେଳରେ ସମସ୍ତ କଟେ । ପ୍ରକୃତି ଭିତରେ ଆମେ କିଛି ସମୟ ପାଇଁ ଭୁଲିଯାଉ ସ୍କୁଲ, ହୃଦୀକ୍ଲାସ ଆଉ ମାଡ଼ । ହଜିଯାଉଥିଲୁ ପ୍ରକୃତି ଭିତରେ ।

ପୀତବାସର ଦାଦପୁଅ ଭାଇ—ସୁରକେନାଏ ପ୍ରାଚୀନଦୀକୂଳ ଅର୍କମଠ (ଅରକ୍ଷିତ ମଠ) ବାବାଜି ହରିଦାସଙ୍କ ବଡ଼ ଭକ୍ତ । ବାବାଜି ହରିଦାସେ ଯୁଗପୁରୁଷ ଅଚ୍ୟୁତାନନ୍ଦ ଦାସଙ୍କ ସମ୍ପ୍ରଦାୟର । ତାଙ୍କର ପାଖାପାଖି ଗାଁରେ ବହୁଶିଷ୍ୟ, ଭକ୍ତ । ତା' ଛଡ଼ା ହରିଦାସ ବାବାଜି ସେ ଖଣ୍ଡମଣ୍ଡଳରେ ଜଡ଼ିବୁଟି, ଝଡ଼ାଫୁଙ୍କା ଇତ୍ୟାଦି ପାଇଁ ମଧ୍ୟ ଜଣାଶୁଣା । ଗୋରା ତକ୍‌ତକ୍ ଦେହ, ମୁହଁରେ ପାଚିଲା ଦାଢ଼ି, ଅଣ୍ଟା ତଳକୁ ଖଣ୍ଡେ ଗେରୁଆ ପରିଷ୍କାର ବସ୍ତ୍ର । ପାଦରେ କଠଉ । ଯେତେଦୂର ଗଲେ ମଧ୍ୟ ହରିଦାସ କଠଉ ପିନ୍ଧି ଯାଆନ୍ତି । ସେ ଗାଁ ବାଟଦେଇ ଗଲାବେଳେ ଘର ଭିତରେ ବୋହୂଝିଅମାନେ ଥାଇ ମଧ୍ୟ ନିଃସନ୍ଦେହରେ କହିପାରନ୍ତି ଯେ 'ହରିଦାସ ବାବାଜି ଯାଉଛନ୍ତି' ବୋଲି । ତାଙ୍କପରି କଠଉ ପିନ୍ଧି କୌଣସି ବ୍ୟକ୍ତି ଆମ ଅଞ୍ଚଳରେ ସେମିତି ଚାଲିପାରୁ ନଥିଲେ । ହରିଦାସ ସବୁବେଳେ ଅଚ୍ୟୁତଙ୍କ ମାଳିକା ବଖାଣି ଲୋକମାନଙ୍କୁ ଆଗତ ଭବିଷ୍ୟତ ଉପରେ ଚେତେଇ ଦିଅନ୍ତି । ମୁହଁରେ ତାଙ୍କର ଆଗତ ଭବିଷ୍ୟ ମାଳିକା ।

ପ୍ରାଚୀକୂଳିଆ ଗାଁବାଲାମାନେ କୁହନ୍ତି ଯେ ହରିଦାସ ବାବାଜି ଅଚ୍ୟୁତଙ୍କ କଳାନେଇ ଜନ୍ମଗ୍ରହଣ କରିଛନ୍ତି । ଅଚ୍ୟୁତଙ୍କ କୃତ୍ୟ 'ବଟ ସଂହିତା'ରେ ହରିଦାସଙ୍କ ମଠ (ଅର୍କମଠ) ଏବଂ ତାଙ୍କ ନାମ ମଧ୍ୟ ଉଲ୍ଲେଖ ଅଛି । ସେ ନିଜେ ଏକଥା କାହାକୁ ନକହିଲେ ମଧ୍ୟ ତାଙ୍କ ଶିଷ୍ୟମାନଙ୍କ ଆଗରେ ବଟ ସଂହିତା ଉଦ୍ଧାର କରି କୁହନ୍ତି । ପୀତବାସ ତା' ଭାଇ ସଙ୍ଗେ ଏ ମଠକୁ ଯାଇ ତାଙ୍କର ମଧ୍ୟ ଶିଷ୍ୟତ୍ୱ ଗ୍ରହଣ କରିବାକୁ ଇଚ୍ଛା କରିଥିଲା, ମାତ୍ର ପିଲାବୋଲି ସେ ଦୀକ୍ଷା ନେଇ ନଥିଲା । ବାବାଜିଙ୍କ ସାଙ୍ଗରେ ବସାଉଠାରେ ସେ ଅଚ୍ୟୁତଙ୍କ ମାଳିକାରୁ କେତେକ ପଂକ୍ତି ମଧ୍ୟ ମନେରଖି ଦେଇଥିଲା । ସ୍କୁଲକୁ ଗଲାବାଟରେ ଏଇ ଅରକ୍ଷିତ (ଅର୍କ) ମଠ ପଡ଼େ । ବାବାଜି ଗୋଟେ ଡଙ୍ଗା ରଖିଥାନ୍ତି । ବଢ଼ିପାଣି କମିଗଲେ ପ୍ରାଚୀନଦୀ ସ୍ରୋତ ହୋଇଯାଏ । କେବଳ ନଦୀଧାରରେ ପାଣି କାର୍ତ୍ତିକମାସ ଶେଷପର୍ଯ୍ୟନ୍ତ ଚାଲେ । ଆଶ୍ୱିନ, କାର୍ତ୍ତିକ ମାସରେ ଆମେମାନେ ଏଇ ମଠ ବାଟଦେଇ ସ୍କୁଲକୁ ଯାଉ । ମଠଡଙ୍ଗାରେ ପଇସା ଦେବାକୁ ପଡ଼େନି । ତା' ଛଡ଼ା ସ୍କୁଲକୁ ଏଇ ବାଟଟି ସଳଖ । ଗାଁରୁ ବାହାରି ବିଲହିଡ଼ରେ ଚାଲି ଚାଲି ମଠପାଖେ ନଈ ପାରହୋଇ ନିଆଳୀ-ମାଧବ ସଡ଼କ ଧରୁ ।

ମଠରେ ଗଲାବେଳେ, ପୀତବାସ ମଠ ଉପରେ ଅଚ୍ୟୁତଙ୍କ ଭବିଷ୍ୟବାଣୀ ଶୁଣିଥିବା କଥା ଶୁଣାଏ ।

"ସେ ବଟମୂଳେ ସପ୍ତ ଋଷି ଛନ୍ତି
ଉଇହୁଙ୍କାକୁ ଧ୍ୟାନ କରୁଛନ୍ତି (୨୪)
କଳାହୁଙ୍କା ଧଳାହୁଙ୍କା ସେ ଜାଣ
ନାଲିହୁଙ୍କା ଶ୍ୱେତହୁଙ୍କା ପ୍ରମାଣ (୨୫)"

(ବଟସଂହିତା)

ଏଇ ଅର୍କମଠରେ ଏକ ବିରାଟ ବଟବୃକ୍ଷ ଅଛି । ଏବେ ବି ସେ ଗଛ ଅଛି । ଏଇ ଗଛରୁ ଏପର୍ଯ୍ୟନ୍ତ ଖଣ୍ଡେ ଡାଳ ଭାଙ୍ଗିନି । ଗଛଟି ବଢ଼ିବାରେ ଲାଗିଛି । ବାଲ ମାଣେ କ ଦୁ'ମାଣେ ଉପରେ ଏଇ ଗଛର ଓହଳ । ଗଛମୂଳରେ ଧନ ଗୃହଟି ହୁଙ୍କା । ସାଧାରଣ ଲୋକମାନେ ଏଇ ହୁଙ୍କାଗୁଡ଼ିକୁ ପୂଜା କରନ୍ତି । ହରିଦାସ ବାବାଜି ମଧ୍ୟ ଏଇ ହୁଙ୍କାଗୁଡ଼ିକୁ ଋଷି ଆଖ୍ୟା ଦେଇ ପୂଜା କରୁଥିଲେ । ହୁଙ୍କା ଏବଂ ବରଗଛମୂଳ ଏତେ ପରିଷ୍କାର ଯେ ମନହେବ ତଳେ ଭାତ ଢାଳି ଖାଇବାକୁ । ମଠ ଗୃହପଟେ ନାନା ରଙ୍ଗର ଫୁଲଗଛ । ପୀତବାସ କହୁଥିଲା ବାବାଜି ନିଜେ ଅଚ୍ୟୁତଙ୍କ ଦେହ ଧାରଣ କରି ଜନ୍ମ ନେଇଛନ୍ତି । ତାଙ୍କ ବୟସ କୋଡ଼ିଏ ଶହେରୁ ଅଧିକ ହେବ । ମାତ୍ର ଜଣାପଡ଼େ ହତେ ଯେପରି ଷାଠିଏ କି ସତୁରି ।

"ପାଟପୁର ବୋଲି ଗ୍ରାମର ନାମ
ଆମ୍ଭେ ସେଠାରେ ହେବୁ ଜନମ
ଦେବାଧି ଦାସର ହୋଇବୁ ସୁତ
ହରିଦାସ ନାମ ହେବ ବିଖ୍ୟାତ ।"

ତେଣୁ ବାବାଜିଙ୍କୁ ଆମର ଭାରି ଭୟ, ଡର । ପୀତବାସ କୁହେ ସେ କୋଡ଼ିଏ ଗୋଡ଼ରେ ବରଗଛର ଗୋଟେ ଡାଳରେ ବସି ଛତିଆମଠ ଅଢ଼େ ଯାଆନ୍ତି । ଲୋକେ ତାଙ୍କୁ ଏକା ସମୟରେ ଦୁଇ ଜାଗାରେ ଦେଖିବା କଥା କୁହନ୍ତି । ଏମିତି କେତେ କଥା ବାବାଜିଙ୍କ ନାଁରେ ଶୁଣାଯାଏ ।

ମୋ ବୋଉ କହୁଥିଲା ଯେ, ମୋ ନାଁଟା ବି ହରିଦାସ ବାବାଜି ଦେଇଥିଲେ । ମୋ ଜନ୍ମ ପୂର୍ବରୁ ଦୁଇ ତିନୋଟି ସନ୍ତାନ ଜନ୍ମପରେ ବର୍ଷେ ଦୁଇବର୍ଷ ମଧ୍ୟରେ ମରିଯାଇଥିଲେ । ମୋ ଆଈ ଶେଷରେ ହରିଦାସ ବାବାଜିଙ୍କ ଶରଣାପନ୍ନ ହେଲା । ତାଙ୍କ ବିଭୁତି ଯୋଗୁଁ ମୋର ଜନ୍ମ ଏବଂ ତାଙ୍କ ଦତ୍ତ ନାଁରେ

ମୋର ବର୍ତ୍ତମାନର ପରିଚୟ ବୋଲି ବୋଉ କୁହେ । ବୋଉର ମଧ୍ୟ ବାବାଜୀଙ୍କ ଉପରେ ଅଗାଧ ବିଶ୍ୱାସ ।

୧୯୫୫ ମସିହାରେ ଦଳେଇଘାଇ ଭାଙ୍ଗିଯିବା ପୂର୍ବରୁ ହରିଦାସ ବାବାଜୀ କୁଆଡ଼େ ଆଗରୁ ଏକଥା କହିଥିଲେ । ସେ ଆଉରି ମଧ୍ୟ କହିଥିଲେ ଯେ ଶଙ୍ଖିଆ କୁମ୍ଭୀର ରାମଚଣ୍ଡୀ ମୁହାଣରୁ ଆସି ମଙ୍ଗଳାଙ୍କ ପାଖେ ପହଞ୍ଚିବ । କୁମ୍ଭୀର କିଛି ନଖାଇ ଦୁଇଦିନ ମଙ୍ଗଳାଙ୍କ ପ୍ରାଚୀ ନଦୀଘାଟରେ ଧାରଣା ଦେବ ଏବଂ ମଙ୍ଗଳାଙ୍କ ପ୍ରସାଦ ପାଇଲା ପରେ ଅନ୍ତର୍ଦ୍ଧାନ ହେବ । ଏଇ ଧାରଣା କଳିଯୁଗରେ ଅନ୍ୟାୟ, ଅନାଚାର ବିରୁଦ୍ଧରେ ଧାରଣା । ଏମିତି କେତେ କଥା ।

ଦଳେଇଘାଇ ଭାଙ୍ଗିବା ବର୍ଷ କଥା । ଆମ ଆଡ଼େ ସେ ବର୍ଷ ପ୍ରାଚୀନଦୀ ବନ୍ୟାରେ ନାହିଁନଥିବା କ୍ଷତି ହୋଇଥାଏ । ବିଲମାଳରେ ବାଲିଚର ହୋଇଯାଇ-ଥାଏ । ନଈବନ୍ଧ ଭାଙ୍ଗି ଗାଁ ଭିତରେ ପାଣି ପଶିଥିଲା । ଅବଶ୍ୟ ଲୋକ କେହି ମରିହଜି ନଥିଲେ । ସେଇ ବର୍ଷ କାର୍ତ୍ତିକ ମାସରେ ଆମେ ସମସ୍ତେ ଅରକ୍ଷିତ ମଠ ଡଙ୍ଗାରେ ପାରିହୋଇ ସ୍କୁଲକୁ ଯାଉଥାଉ । ସେଦିନ ସ୍କୁଲଦରମା ଦେବା ତାରିଖ ଥିବା ଯୋଗୁଁ ସମସ୍ତେ ସ୍କୁଲଦରମା ସାଙ୍ଗରେ ନେଇଥିଲୁ । ଡଙ୍ଗା ପାରିହୋଇ ଗଲାବେଳେ, ପୀତବାସ କହିଲା ଯେ ଗଲା ରାତିରେ ତାଙ୍କ ସୁରଭାଇ ହରିଦାସ ବାବାଜୀଙ୍କଠାରୁ ଶୁଣିଥିଲେ ସେଇବର୍ଷ କାର୍ତ୍ତିକମାସ ଅମାବାସ୍ୟା ଦିନ 'ପ୍ରଳୟ' ହେବ । ସମୁଦ୍ର ମାଡ଼ିଆସିବ । ଦିନବେଳେ ସୂର୍ଯ୍ୟ ଦେଖା ଦେବେନି । ପ୍ରଳୟ ଭିତରେ ସମସ୍ତେ ଲୀନ ହୋଇଯିବେ । ଗୃହଆଡ଼େ ସମୁଦ୍ର ଘୋଟିଯିବ ।

ଆମ ସାଙ୍ଗ ଧରମା ବେହେରା କହିଲା, “ତା’ହେଲେ କ’ଣ ଆମେ ସବୁ ମରିଯିବା, ଆମ ଘରଦ୍ୱାର ସମୁଦ୍ର ଭିତରେ ବୁଡ଼ିଯିବ ।” ପୀତବାସ ଅତ୍ୟନ୍ତ ଗମ୍ଭୀର ହୋଇ ସେଇ ବାଣୀ ଶୁଣାଇଲା ଏବଂ ଏହା ନିରାଟ ସତ୍ୟ, ଏକଥାରେ ସନ୍ଦେହ ପ୍ରକାଶ କରିବା ନିତାନ୍ତ ମୂର୍ଖତା ବୋଲି ତା ଭାଷା ଏବଂ ଅଙ୍ଗଭଙ୍ଗୀରେ ବୁଝାଇ-ଦେଲା ।

ସେଦିନ ତା’ କଥାଶୁଣି ଆମ ସମସ୍ତଙ୍କ ମନରେ ଏକ ଅଜଣାଭୟ ମାଡ଼ି ବସିଥିଲା । ସ୍କୁଲକୁ ଯିବାବାଟରେ ଧରମା ବେହେରା କହିଲା, “ପୀତବାସ, ଆମେ ଯଦି ଆଉ ଆଠଦିନ ମଧ୍ୟରେ ମରିବା (ସେଦିନକୁ କାର୍ତ୍ତିକ ଅମାବାସ୍ୟା ଆଉ ଆଠଦିନ ଥାଏ) ତାହେଲେ ସ୍କୁଲଦରମା ଦେଇ ଲାଭ କ’ଣ । ସମସ୍ତଙ୍କ ମନକୁ ତା’ କଥାଟା ପାଇଲା, ସତରେ ଦରମା ଦେଇ ଲାଭ ବା କ’ଣ । ପ୍ରଳୟ ତ ଘଟିବ । ସମସ୍ତେ ତ ମରିବା । ସ୍କୁଲ ହେଡ଼୍‌ମାଷ୍ଟ୍ରଙ୍କୁ ଦରମା ଦେଇ ଲାଭ କ’ଣ ।

ପୀତବାସ କହିଲା, ଚାଲ ଯିବା ପଞ୍ଚୁ ସାହୁ ଦୋକାନରୁ ରସଗୋଲା କିଣି ଖାଇବା, ସ୍କୁଲକୁ ଯିବାନି କି ଦରମା ଦବାନି । ତା' କଥାକୁ ସମସ୍ତେ ସମର୍ଥନ କଲେ । ସେଦିନ ସ୍କୁଲକୁ ନଯାଇ ପଞ୍ଚୁ ସାହୁ ଦୋକାନରୁ ସମସ୍ତେ ରସଗୋଲା, ଗୋଲପଜାମୁ କିଣିଦେଲୁ । ସେସବୁ ଧରି ପ୍ରାଚୀକୂଳ ଜଙ୍ଗଲରେ ପଶିଲୁ । ପେଟେଲେଖେଁ ରସଗୋଲା ଖାଇଲୁ । (ସେତେବେଳେ ଟଙ୍କାକୁ ୧୬ଟା ରସଗୋଲା) । ନଈପାଣିରୁ ପେଟେ ପିଇଲୁ । ତାଳମାଙ୍କୁଡ଼ି ଖେଳି ସନ୍ଧ୍ୟାବେଳକୁ ଘରକୁ ଫେରିଲୁ । ତା'ପରେ ସବୁଦିନ ସ୍କୁଲକୁ ଅସୁ, ମାତ୍ର ଜଙ୍ଗଲରେ ବୁଲିବୁଲି କରି ଫେରୁ । ଅଠଦିନର କଥା । ସ୍କୁଲକୁ ନଗଲେ କିଏ ବା ଜାଣୁଛି । ଚାହୁଁ ଚାହୁଁ ଅଠଦିନ କଟିଗଲା । ପ୍ରଳୟ ଦିନ ଅସି ଉପସ୍ଥିତ ହେଲା । ସେଦିନ ସକାଳୁ ଅମେ ସମସ୍ତେ ଏକାଠି ହେଲୁ । ପୀତବାସ ଘର ବାଡ଼ିପଟେ କଦଳୀଗଛ କାଟି ଗୋଟେ ବଡ଼ ଭେଳା ତିଆରି କଲୁ । ଯଦି ପାଣି ମାଡ଼ିଅସେ, ତାହେଲେ କଦଳୀଭେଳାରେ ବସିବୁ । ଦିନବେଳେ ସୂର୍ଯ୍ୟ ଉଇଁଲେ । ପୂର୍ବ ଆକାଶରୁ ପଶ୍ଚିମଆଡ଼େ ଚାଲିଲେ । ଦିନବେଳେ ଅନ୍ଧାର ହେଲନି । ସକାଳ ଯାଇ ସନ୍ଧ୍ୟାହେଲା । ସମୁଦ୍ରର ଦେଖା ନାହିଁ । ସନ୍ଧ୍ୟାବେଳକୁ ପୀତବାସ କହିଲା, ରାତିରେ ନିଶ୍ଚୟ ସମୁଦ୍ର ମାଡ଼ିଅସିବ । ରାତି ଦଶଟାଏ ପର୍ଯ୍ୟନ୍ତ ଚାହିଁଲୁ, ତା'ପରେ ଘରୁ ଡକାହାକି ଫେରିଲୁ । କଦଳୀଭେଳା ପୀତବାସ ଘର ବାଡ଼ିରେ ପଡ଼ିରହିଲା ।

ଖାଇସାରି ରାତିରେ ଶୋଇଲି । ନିଦ ଅସୁନଥାଏ । କେତେବେଳେ ନିଦ ଅସିଲା ଜାଣିନି । ସକାଳୁ ବୋଉ ପାଟିଶୁଣି ମୁଁ ଚମକି ଧଡ଼ପଡ଼ ହୋଇ ଉଠିଲି । ଭାବିଥିଲି ସମୁଦ୍ରଟା ମାଡ଼ିଅସିଛି । ମାତ୍ର ଦେଖିଲି, ସେମିତି କିଛି ନାହିଁ । ଯେ ଯେଉଁଠି ରହିବା କଥା, ସେମିତି ପୂର୍ବପରି ଅଛି । କିଛି ପରିବର୍ତ୍ତନ ନାହିଁ । ପୀତବାସର ଭବିଷ୍ୟତବାଣୀ ଅନୁଯାୟୀ ପ୍ରଳୟ ହେଲନି ।

ତା' ପରଦିନ ସ୍କୁଲକୁ ଗଲୁ । ସେତେବେଳକୁ ଆମ ନାଁ ସ୍କୁଲଖାତାରୁ କଟିଯାଇଥାଏ । ହିନ୍ଦୀଶିକ୍ଷକ ଦେବୀ ବାବୁଙ୍କ କ୍ଲାସରେ ଆରମ୍ଭ ହେଲା "ବେତର ପ୍ରଳୟ" । ମୋ ଉପରେ କୋଡ଼ିଏ ବେତ ହେଲାବେଳକୁ ମୋ ପାପୁଲି ଦି'ଟା ଅଲଗା ହୋଇଗଲା । ପୁଣି ମୂଳରୁ ଆରମ୍ଭ । ମୁଁ ସବୁକଥା କହିଦେଲି । ତା'ପରେ ପୀତବାସର ପାଳି ପଡ଼ିଲା । ସେ ଘରଯାକ କେଉଁ ପ୍ରଳୟ ସୃଷ୍ଟି କଲା ।

ମୋ କଥାଶୁଣି ମୋ ଝିଅ ଖବରକାଗଜ ଥୋଇଦେଇ କହିଲା, ଡାଡି ମୋର କଲେଜ ଡେରି ହେଲାଣି, ମୁଁ ଯାଉଛି ।

●

# ଅଦୃଶ୍ୟ ହାତ

୧୯୭୭ ମସିହା ଡିସେମ୍ବର ମାସ । ଶୀତଦିନଆ ସନ୍ଧ୍ୟା ମଫସଲ ସହର ଉପରଦେଇ ମାଡ଼ିଆସୁଥାଏ । ସକାଳୁ ସରକାରୀ ଗସ୍ତରେ ଯାଇ ଫେରୁଥିଲି ସନ୍ଧ୍ୟା ପୂର୍ବରୁ । ସହରର ଗୋଟିଏ ପୁରୁଣା ଗଳିର ଶେଷଭାଗରେ ମୋର ବସାଘର । ନୂଆହୋଇ ମୋ ଅଫିସ ଖୋଲିଥିବାରୁ ସରକାରୀ ଘର ଠିଆର ହୋଇ ନଥାଏ । ମୁଁ ଥାଏ ଏକୁଟିଆ । ମୋ ଗାଡ଼ି ଘରପାଖେ ପହଞ୍ଚିଲାବେଳେ, ଦେଖିଲି ଗୋଟିଏ ନୂଆ ଜିପ୍ ମୋ ଗେଟ୍ ଆଗରେ ଥୁଆହୋଇଛି । କିଏ ମୋତେ ସାକ୍ଷାତ କରିବାକୁ ଆସିଥିବ ଭାବି ମୁଁ ଗାଡ଼ିରୁ ଓହ୍ଲାଇଲାବେଳକୁ ଘରଭିତରୁ ବୁଢ଼ା ଅର୍ଦ୍ଦଳି ରାମ ରାଗ ଆଉ ବିରକ୍ତିରେ ମୋ ଆଗରେ ଆରମ୍ଭ କଲା, ବେନିମନ୍ତ୍ରିଆ ଭଦ୍ରବ୍ୟକ୍ତିମାନଙ୍କ ବିରୁଦ୍ଧରେ କେତେକ ଅଭିଯୋଗ । କେତେଜଣ କଟିକିଆ ଭଦ୍ରବ୍ୟକ୍ତି ମୋ ଡ୍ରଇଁ-ରୁମ୍‌ରେ ବସି ଦଶବାର କପ ଚା’ ପିଇସାରିଲେଣି । ତା’ ମନାକରିବା ସତ୍ତ୍ୱେ ମଧ ମୋ ଟେଲିଫୋନ୍‌ରୁ କେତେଆଡ଼େ ଟେଲିଫୋନ୍ କଲେଣି । ତା’ ପାଟିରୁ କଥା ସରିବା ବେଳକୁ ଦେଖିଲି କଟକରୁ ବାବୁ, ବାବୁଲି, ଫୁଲୁ, ଗୋରାଭାଇ ଆସି ମୋ ଘରେ ପହଞ୍ଚିଛନ୍ତି । ସମସ୍ତେ ମୋର ବନ୍ଧୁ । ବହୁଦିନରୁ ପରିଚିତ । ମାତ୍ର ଏଇ ମଫସଲ ସହର ଘରେ ସେମାନେ ପ୍ରଥମଥର ପାଇଁ ପାଦ ପକାଇଥାନ୍ତି ।

ମୁଁ କିଛି ପଚାରିବା ପୂର୍ବରୁ ବାବୁ ପଟ୍ଟନାୟକ କହିଲା—‘କ’ଣ ଦେଖୁଛୁ ?’

ମୁଁ କହିଲି କାହିଁ···ତୁମେ ସମସ୍ତେ···ଆଉ କ’ଣ ? ବାହାରେ ଥୁଆହୋଇଥିବା ନୂଆଜିପ୍ ଆଡ଼େ ହାତ ଦେଖେଇ ବାବୁ କହିଲା ଯେ ମହେନ୍ଦ୍ର ଆଣ୍ଡ ମହେନ୍ଦ୍ର କମ୍ପାନୀରୁ ନୂଆ ବାହାରିଥିବା ଡିଜେଲ୍ ଜିପ୍‌କୁ ଧରି ସେମାନେ ସମସ୍ତେ ଆସିଛନ୍ତି । ତା’ ପାଟିରୁ କଥା ଛଡ଼େଇନେଇ ବାବୁଲି କହିଲା, “ଆସିଛନ୍ତି ଶିକାର ଯିବାପାଇଁ ।” ହାତରେ ଧରିଥିବା ଶିକାର ପରମିଟକୁ ଦେଖାଇଲା ବାବୁଲି । ତା’ର ବେଶପୋଷାକ ହିନ୍ଦୀସିନେମାର ଅଣ୍ଡର୍‌ଗ୍ରାଉଣ୍ଡ୍ ଡନ୍‌ପରି ଦିଶୁଥାଏ । ସନ୍ଧ୍ୟାହୋଇ ଆସୁଥିଲେ ବି ଆଖିରେ କଳାଚଷମା, ଦେହରେ ଫିକା ଜିନ୍‌ପ୍ୟାଣ୍ଟ୍ ସାଙ୍ଗକୁ ଫୁଲ୍‌ସାର୍ଟ । ଅଣ୍ଟାରେ ମୋଟା ଚମଡ଼ାର ଗୁଳିଭର୍ତ୍ତି ବେଲ୍‌ଟ । କାନ୍ଧର ଅନ୍ୟପଟେ

ତା'ର ଦୁଇନଳିଆ ବନ୍ଧୁକ । ଅଣ୍ଟାର ପଛପଟେ ଗୋଟାଏ ଛୁରୀ, ଗୋଡ଼ରେ ବୁଟ୍ । ହାତରେ ସିଗାରେଟ୍ ନିଆଁ ଜଳୁଥାଏ । ସେମାନେ ସମସ୍ତେ ଆସିଥିଲେ ଶିକାର ପାଇଁ । ମୋତେ ଶୀଘ୍ର ପ୍ରସ୍ତୁତ ହେବାକୁ ନିର୍ଦ୍ଦେଶ । ଅଗତ୍ୟା ସେମାନଙ୍କ ଅନୁରୋଧକୁ ଲଙ୍ଘି ନପାରି ଅଳ୍ପ ସମୟ ମଧ୍ୟରେ ପ୍ରସ୍ତୁତ ହେଲି । ଆମକୁ ସୁଟିଂ ବ୍ଲକ୍‌ରେ ପହଞ୍ଚିବାକୁ ଦୁଇଘଣ୍ଟାରୁ ଅଧିକ ସମୟ ଲାଗିବ ।

ପ୍ରାୟ ସନ୍ଧ୍ୟା ଛଅଟା ବେଳକୁ ଆମେ ସମସ୍ତେ ସେଇ ଗ୍ରେଟ ସହର ଛାଡ଼ିଲୁ । ନୂଆ ଡଜେଲ୍ ଜିପ୍ ମଫସଲ ରାସ୍ତାରେ ଚାଲିଲି ଜଙ୍ଗଲଆଡ଼େ । ଗଲାବେଳେ ବାଟରେ ମୁଁ ଆଉ ଜଣେ ଅଫିସରଙ୍କୁ ମୋ ସାଙ୍ଗରେ ନେବାକୁ ସେମାନଙ୍କୁ କହିଥିଲି । ସେଇ ଅଫିସରଙ୍କ ଜୁରିସିଡ଼ିକସନ୍ ଭିତରେ ଶିକାର ପାଇଁ ଅନୁମତି ପାଇଥିବା ଜଙ୍ଗଲ । ତାଙ୍କୁ ନେଲେ ସୁବିଧା ହେବ । ସମସ୍ତେ ରାଜି ହେଲେ । ତାଙ୍କ ବସାଘର ପାଖେ ପହଞ୍ଚିଲୁ ପ୍ରାୟ ଷାଠିଏ କିଲୋମିଟର ଗଲାପରେ । ରାତି ପ୍ରାୟ ସାଢ଼େ ସାତ । ସେତେବେଳକୁ ସେ ମଧ୍ୟ ଅଫିସରୁ ଫେରି ଘରେ ଥାଆନ୍ତି । ଶିକାର ଯିବାକଥା ଶୁଣି ସେ ବାହାରି ପଡ଼ିଲେ । ଆମେ ସବୁ ବାହାରେ ଅପେକ୍ଷା କରିଥାଉ । ସମୟ ଗଡ଼ିଯାଉଛି ବୋଲି ବାବୁଲି ବ୍ୟସ୍ତ । ପୁଣି ଷାଠିଏ କି ସତୁରି କିଲୋମିଟର ଗଲାପରେ ଜଙ୍ଗଲ ପଡ଼ିବ । କିଛି ସମୟ ପରେ ଅଫିସର ଗୋଟେ କମ୍ବଳ ଦେହରେ ପକାଇ ହାତରେ ଗୋଟାଏ ବଡ଼ ପାନଡବା ଧରି ବାହାରିଲେ । ସତେ ଯେପରି ସେ ଗାଁ ଅପେରା ଦେଖି ଯାଉଛନ୍ତି । ପାନଡ଼ବାକୁ ଦେଖି ବାବୁଲି ଭାବିଲା ଯେ ସେ ବୋଧେ ରାତିପାଇଁ କିଛି ଖାଦ୍ୟ ଆଣିଛନ୍ତି । ମାତ୍ର ଖୋଲିଲାବେଳକୁ ପ୍ରାୟ ଷାଠିଏ କି ସତୁରି ପାନ । ଅଫିସର ଜଣକ ପାନପ୍ରିୟ । ପ୍ରତ୍ୟେକ ପାଞ୍ଚମିନଟ୍‌ରେ ଖଣ୍ଡେପାନ ପାଟିକୁ ନଗଲେ ନଚଳେ । ହତାଶ ହୋଇ ବାବୁଲି ଗାଡ଼ିରେ ବସିଲା ।

ରାତି ନଅଟା ବେଳକୁ ପାହାଡ଼ତଳି ଗାଁ ପାଖେ ପହଞ୍ଚିଲୁ । ସେଇଠୁ ଜଙ୍ଗଲ-ବାଟ ଆରମ୍ଭ । ଗାଁଟି ଗାଁ ହେଲେ ବି ମଫସଲ ଅଞ୍ଚଳର ଗୋଟିଏ ଟାଉନ୍ । ଏଠି ପୁଲିସଥାନା, ଡାକଘର, ବ୍ଲକ ଅଫିସ୍ ଅଛି । ମାତ୍ର ଶୀତଦିନ ରାତି ନଅଟାବେଳେ ଏଇ ମଫସଲ ଟାଉନ୍‌ରେ କେତେଗୁଡ଼ିଏ ବୁଲାକୁକୁରଙ୍କୁ ଛାଡ଼ିଦେଲେ ଆଉ କାହାକୁ ଦେଖିବାକୁ ମିଳି ନଥିଲା । ମୋ ସହକର୍ମୀ ଜଣେ କହିଲେ ଯେ ଲୋକାଲ୍ ଥାନା ଅଫିସରଙ୍କୁ ସଙ୍ଗରେ ନେଲେ ଜଙ୍ଗଲରେ କିଛି ଅସୁବିଧା ହେବନି । ବାଟରେ ଫରେଷ୍ଟ ଗେଟ୍ । ଜଙ୍ଗଲରାସ୍ତା ଜାଣିବାରେ ସେ ସାହାଯ୍ୟ କରିବେ । ତାଙ୍କ ପ୍ରସ୍ତାବ ଅନୁସାରେ ଥାନା ଆଗରେ ଗାଡ଼ି ରହିଲା, ମୁଁ ଚାଲିଚାଲି ଥାନାବାରଣ୍ଡାକୁ ଉଠିଲି । ଚାରିଆଡ଼େ କଟିକଟି ଅନ୍ଧାର । ଦଶଫୁଟ ଉଚ୍ଚ ପୁଟୁଣାକାଳିଆ ରଜା ଅମଳର ଥାନା-ବାରଣ୍ଡାକୁ ଉଠି ଦେଖିଲି ଥାନାଘରେ ଗୋଟାଏ କଳାପଡ଼ିଯାଇଥିବା ଲଣ୍ଠନ

ମିର୍ଟି ମିର୍ଟି ହୋଇ ଜଳୁଛି । ଜଣେ ବୁଢ଼ା କନେଷ୍ଟବଲ ଗୋଡ଼ ଦୁଇଟିକୁ ଥାନାର ମାଲ୍‌ଖାନା ରୁମ୍ ଭିତରକୁ ପୂରେଇଦେଇ ଶୋଇଛି । ମୁଁ ଦୁଇଥର ଡାକିଲାପରେ ସେ ଜବାବ ଦେଲା । ଲଣ୍ଠନ ବତି ତେଜି ଚାହିଁଲି । ତା'ର ଏପରି ଅବସ୍ଥାରେ ଶୋଇଥିବା ଦେଖି ମୁଁ ତାକୁ ପଚାରିଲି ଯେ, ସେ ଗୋଡ଼ କାହିଁକି ମାଲଖାନା କୋଠରି ଭିତରେ ପୂରାଇ ଶୋଇଥିଲା । ବୁଢ଼ା ପୁରୁଣା ଷ୍ଟେଟ୍ ଟାଇମ୍‌ର କନେଷ୍ଟବଲ । ମୋତେ ଦେଖି ଦୋଦୋଚହ୍ଲା ହୋଇ କହିଲା—"ସାହେବ, ସନ୍ଧ୍ୟାବେଳେ ଗୋଟେ ବୁଢ଼ା ନାଗସାପ, ଏଇ ମାଲଖାନା ଭିତରେ ପଶିଗଲା ଯେ ଆଉ ବାହାରିଲାନି । ମୁଁ ସେଇଥିଲାଗି ଗୋଡ଼ ପୂରେଇ ଶୋଇଥିଲି । ମୋ ଗୋଡ଼କୁ କାମୁଡ଼ିଥିଲେ ସେ 'ଶଳା ମରିଥାନ୍ତା' । କୋଡ଼ିଏ ବର୍ଷ ହେଲା ଅଫିମ ଖାଉଛି ତ, ଯିବ କୁଆଡ଼େ ।" ତା' କଥା ଶୁଣି ମୁଁ ଆଉ କ'ଣ ବା କହିଥାନ୍ତି ।

ସେ ଥାନାବାବୁଙ୍କୁ ଖବର ଦେଲା । ଥାନାବାବୁ ଘରୁ ନିଦମଳମଳ ଆଖିରେ ବାହାରିଆସି ଆମ ଦୁଇଜଣଙ୍କୁ ଦେଖି ପ୍ରଥମେ ବ୍ୟସ୍ତ ହୋଇପଡ଼ିବାର ଦେଖାଗଲା । ମାତ୍ର ମୋଠାରୁ ଯେତେବେଳେ ଶିକାର ଯିବାକଥା ଶୁଣିଲେ ସେ ବେଶ୍ ଉତ୍‌ଫୁଲ୍ଲ ହୋଇ ଉଠିଲେ । ସେତେବେଳକୁ ବାବୁ, ବାବୁଲି ଫୁଲୁ ଗାଡ଼ିରୁ ଓହ୍ଲାଇ ଥାନାବାରଣ୍ଡା ଉପରେ ପହଞ୍ଚି ଯାଇଥାନ୍ତି । ସେମାନଙ୍କ ହାତରେ ବନ୍ଧୁକ, ଶିକାର ପରମିଟ୍ ଦେଖି, ଥାନାବାବୁ ଆରମ୍ଭ କରିଦେଲେ ଯେ ଗତ ଦୁଇଦିନ ତଳେ ସେ ଆଦିବାସୀ ଗାଁରେ ଗୋଟିଏ ଅପମୃତ୍ୟୁ ଘଟଣାକୁ ତଦନ୍ତ କରି ଫେରିଲା ବାଟରେ ମହାବାଲ ବାଘ ତାଙ୍କ ମାଇକେଲ ଆଗରେ କିପରି ଜମ୍ପ୍ କରିଗଲା । ସେ ଭୟଶୂନ୍ୟ ଭାବେ ମହାବଳ ବାଘ ଆଡ଼େ କିଛି ସମୟ ଚାହିଁଲା ପରେ ଫେରିଲେ । ତାଙ୍କ କହିବା ଅନୁସାରେ ମିରିଗ, କୁଟୁରା ଇତ୍ୟାଦି ଜନ୍ତୁଜନ୍ତା ଜଙ୍ଗଲରେ ପ୍ରବେଶ ମାତ୍ରକେ ଦେଖିବେ । ଜନ୍ତୁଜନ୍ତାଙ୍କ ଯିବାଆସିବା ବିଷୟରେ ତାଙ୍କଠାରୁ ବେଶି କେହି ଜାଣନ୍ତିନି ବୋଲି ସେ ପରୋକ୍ଷ ଭାବରେ ଜଣାଇଦେଲେ । ତାଙ୍କର ବର୍ଣ୍ଣନାତ୍ମକ ଭାଷଣ ସରିବା ପରି ଜଣାପଡ଼ୁନଥିଲା । ହଠାତ୍ ତାଙ୍କ କଥାକୁ ବନ୍ଦକରି ବାବୁଲି କହିଲା ଜଲ୍‌ଦି ଆସିବା ପାଇଁ । ଥାନାବାବୁ ଅଳ୍ପ ସମୟ ମଧ୍ୟରେ ବାହାରିପଡ଼ିଲେ । ପୁରୁଣା ଅଭ୍ୟାସ ଅନୁସାରେ ଖାକିପ୍ୟାଣ୍ଟ୍ ଉପରେ ପୁଲିସ ଜର୍ସି, ହାତରେ ଚମଡ଼ା ହାତଲଗା ବ୍ୟାଗ୍ ।

ଡିଜେଲଗାଡ଼ି ଏଇ ମଫସଲ ଟାଉନ୍ ଛାଡ଼ିଲାବେଳକୁ ରାତି ପ୍ରାୟ ଦଶ ପାଖାପାଖି । ଅଳ୍ପ ବାଟ ଗଲାପରେ ଗୋଟାଏ ଫରେଷ୍ଟ ଗେଟ୍ ପଡ଼ିଲା । ଥାନାବାବୁ ଜିପ୍‌ପଛରୁ ପାଟିକଲେ "ଖୋଲ ଜଲ୍‌ଦି" । ବାବୁଙ୍କ ପାଟିଶୁଣି, ସଙ୍ଗେ ସଙ୍ଗେ ଗେଟ୍‌ବାଲା ଗେଟ୍ ଉଠାଇଦେଲା । ବାବୁଲି ଫୁଲୁକାନରେ ଚୁପ୍‌ଚୁପ୍ କରି କହିଲା ଯେ ଥାନାବାବୁ ପ୍ରକୃତରେ ପୁରୁଣାକାଳିଆ ଜୋରଦାର୍ ଥାନାଦାର୍ ।

ଆମଗାଡ଼ି ଜଙ୍ଗଲରାସ୍ତାରେ ଯିବା ଆରମ୍ଭ କଲା । ମୁଁ ହାତରେ ଷ୍ଟିଲ୍‌ଚିତ୍ର ନେଇଥାଏ । ବାବୁଲି ପଛରେ ମୋ ପାଖେ ତା' ବନ୍ଧୁକ ଧରି ଠିଆ ହୋଇଥାଏ । ଆଗରେ ଗୋପୀଭାଇ ତାଙ୍କ ଟେଲିସ୍କୋପିକ୍ ରାଇଫଲ ଧରି ବସିଥାନ୍ତି । ବାପୁ ତାଙ୍କ ପାଖରେ । ଆମେ ସେପର୍ଯ୍ୟନ୍ତ ସୁଟିଂବ୍ଲକ୍ ମଧ୍ୟକୁ ପଶିନଥାଉ । ଗାଡ଼ି ଚାଲୁଥିବା ସମୟରେ ହଠାତ୍ ଥାନାବାବୁ ପଛରୁ ପାଟିକରି ଉଠିଲେ, "ରଖ ରଖ, ଗାଡ଼ି ବନ୍ଦକର ।" ଆମେ କିଛି ପ୍ରଥମେ ବୁଝିପାରିଲୁନି । ବାବୁଲି ଭାବିଲା ବୋଧେ ଥାନାବାବୁ ଗୋଟେ ଜନ୍ତୁ ଦେଖିଲେ । ସାଥିସାଥି ସେ ତା'ର ବନ୍ଧୁକ କାନ୍ଧ ଉପରକୁ ଉଠେଇ, ଜଙ୍ଗଲଆଡ଼େ ଆଖି ବୁଲେଉଥାଏ । ଆଗରେ ଗୋପୀଭାଇ ଘୁମେଉଥାନ୍ତି । ସେ ବି ଧଡ଼ପଡ଼ ହୋଇ ଉଠି ତାଙ୍କ ରାଇଫଲ ସଜାଡ଼ିବାକୁ ଆରମ୍ଭ କରିଦେଇଥାନ୍ତି । ଗାଡ଼ି ବନ୍ଦ ହେଲାପରେ, ଥାନାବାବୁ ଗାଡ଼ି ପଛପଟୁ ଡେଇଁପଡ଼ି, ସିଧାସଳଖ ରାସ୍ତାପାଖ ଗଛଆଡ଼କୁ ଚାଲିଲେ । ମୁଁ ଗାଡ଼ିଉପରୁ ଷ୍ଟିଲ୍‌ଚିତ୍ର ପକଉଥାଏ । ଦେଖିଲି ପାହାଡ଼କାନ୍ଥ ଶାଳଗଛ ମୂଳେ କେତେଗୁଡ଼ିଏ ମାଟିଘୋଡ଼ା ବଡ଼ ପଥରଖଣ୍ଡ ଉପରେ ଗୋଟିଏ ସିନ୍ଦୂରବୋଳା ପଥର, କେତେଖଣ୍ଡ ବେତ । ଥାନାବାବୁ ଗଛମୂଳେ ପହଞ୍ଚି ଲମ୍ବହୋଇ ସାଷ୍ଟାଙ୍ଗ ପ୍ରଣିପାତ କଲେ । ଗଛମୂଳେ ଚକାପକାଇ ତାଙ୍କ ଚମଡ଼ା ବ୍ୟାଗ୍ ଖୋଲିଲେ । ବ୍ୟାଗ୍ ଭିତରୁ କିଛି ଧୂପକାଠି କାଢ଼ି ଧୂପଦେଲେ । ତା'ପରେ ନଡ଼ିଆଟିଏ କାଢ଼ିଲେ । ଗଛମୂଳ ପଥର ଉପରେ ଗୁଣୁଗୁଣୁ ହୋଇ ମନ୍ତ୍ରପଢ଼ି ନଡ଼ିଆ ଭାଙ୍ଗିଲେ । ତା'ପରେ ସେ ଆସିଲେ ଜିପ୍ ପାଖକୁ ବନ୍ଧୁକ ନେଇ ପୂଜା କରିବା ପାଇଁ ।

ବନ୍ଧୁକ ଦେବାକୁ ବାବୁଲି ନାରାଜ । ଥାନାବାବୁ କହୁଥାନ୍ତି ସେ ସ୍ଥାନଟି ହେଲ ବଣଦେବତାଙ୍କ ପୀଠସ୍ଥଳୀ । ଯେଉଁମାନେ ଏ ଜଙ୍ଗଲକୁ ପ୍ରବେଶ କରନ୍ତି, ପ୍ରଥମେ ତାଙ୍କୁ ଏଠାରେ ଆରାଧନା କରି ଜଙ୍ଗଲରେ ପଶିଥାନ୍ତି; ନହେଲେ ମହାବିପଦ । ସେ କହୁଥିଲେ, ଆଇ.-ଜି. ଘୋଷ ସାହେବଙ୍କ ଜୋଇଁ ଥରେ ଶିକାରକୁ ଆସିଥିଲେ ସାଙ୍ଗମାନଙ୍କୁ ଧରି କଲିକତା ସହରରୁ । ଏଇ ବାଟଦେଇ ଗଲାବେଳେ ସେ ବଣ-ଦେବୀଙ୍କୁ ଅବମାନନା କଲେ । ହସରେ ଉଡ଼ାଇଦେଲେ । ହେଲେ ଫଳ କ'ଣ ହେଲା ? ବଣଦେବତାଙ୍କ ରାଗରୁ ବଣୁଆହାତୀଙ୍କ ହାବୁଡ଼େ ପଡ଼ି ପ୍ରାଣଗଲା । ଦୁ'ଜଣ ଜଙ୍ଗଲରେ ମଲେ । ଆଉ ଜଣେ କଲିକତା ଯାଇଁ ମଲା । ତା'ପରେ··· । ଥାନାବାବୁ ଗୋଟିକପରେ ଗୋଟିଏ ଉଦାହରଣ ଦେବାକୁ ଗଲାବେଳେ, ବାବୁଲି ତା' ବନ୍ଧୁକ ବଢ଼ାଇଦେଇ ଜଲ୍‌ଦି ପୂଜା କରିବାକୁ କହିଲା । ଥାନାବାବୁ ଦୁଇଟି ବନ୍ଧୁକ ଧରି ବନଦେବୀଙ୍କ ଆଗରେ ପୂଜା ଆରମ୍ଭ କଲେ ।

ଜଙ୍ଗଲ ଭିତରେ ସମୟ ନଷ୍ଟ ହେଉଥିବା ଦେଖି ବାବୁଲି ଅତ୍ୟନ୍ତ ବ୍ୟସ୍ତ ହୋଇଉଠୁଥାଏ । ବାପୁ, ଗୋପୀଭାଇ ଆଗରେ ବସି ଘୁମଉଥାନ୍ତି । ଫୁଲୁ ମୁହଁରେ

ବିରକ୍ତ । ଡେରହେବା ଦେଖି ବାବୁଲି ଜିପ୍ ଉପରୁ ପାଟି କରିଉଠିଲା । ତା' ପାଟିଶୁଣି ଥାନାବାବୁଙ୍କ ପୂଜାରେ ବିଘ୍ନ ହେଲାପରି ସେ ଅନୁଭବ କଲେ, ମାତ୍ର ବାବୁଲି ସେଥିପ୍ରତି ଖାତିର ନକରି ତାଙ୍କୁ ଜଲ୍‌ଦି ଆସିବାକୁ ଡାକୁଥାଏ । ଥାନାବାବୁ ପ୍ରସାଦ ଦେଲାବେଳେ ବାବୁଲି ତାଙ୍କ ହାତଧରି ଏକାଥରକେ ତାଙ୍କୁ ଜିପ୍ ଉପରକୁ ଟାଣିନେଇ ଆସିଲେ । ପ୍ରସାଦ ବଣ୍ଟେଇ ଦେଲାନି ଏବଂ ତା' କଥାରେ ଜିପ୍ ପୁଣି ଜଙ୍ଗଲ ଆଡ଼େ ଗଡ଼ିଲା । ଥାନାବାବୁ ବାବୁଲି ମୁହଁ ଉପରେ କିଛି କହିପାରିଲେନି । ମୁହଁମାରି ପଛରେ ବସିଲେ ।

ଖାଲ୍‌ଢିପ ପାହାଡ଼ ରାସ୍ତାଦେଇ ଜିପ୍ ସୁଟିଂ ବ୍ଲକ୍‌ଦେଇ ଯିବା ଆରମ୍ଭ କରିଥାଏ । ମାତ୍ର ଅଳ୍ପବାଟ ଯାଇଛୁ ଦେଖିଲୁ ଗୋଟିଏ ସୁନ୍ଦର ମିରିଗ ସିଂଘାଳ ଜିପ୍ ସାମ୍ନାଦେଇ ଡେଇଁ ଡେଇଁ ରାସ୍ତାର ଗୋଟିଏ ପାଖରୁ ଅନ୍ୟପାଖକୁ ଗଲା । ସ୍ପଟ୍‌ଲାଇଟରେ ସିଂଘାଳ ପରିଷ୍କାରଭାବେ ଦିଶୁଥାଏ । ଜିପ୍ ଉପରୁ ବାବୁଲି ଦୁଇଥର ଗୁଳିମାରିଲା । ମାତ୍ର କୌଣସି ଗୁଳି ସିଂଘାଳ ଦେହରେ ବାଜିଲାନି । ଏତେ ପାଖରେ ମିରିଗ ସିଂଘାଳକୁ ପାଇ ହରେଇଥିବା ହେତୁ, ବାବୁ ଆଉ ବାବୁଲି ଭିତରେ କିଛି ସମୟ ପାଇଁ ପାଟିତୁଣ୍ଡ ଚାଲିଲା । ଜଙ୍ଗଲ ଭିତରେ ପାଟିକରି ଲାଭନାହିଁ ଭାବି ପୁଣି ଚାଲିଲୁ ।

ଅଳ୍ପବାଟ ଗଲାପରେ ଦେଖିଲୁ ଚାରିପଟେ ଶାଳ, ପିଆଶାଳ ବଣ । ମଝିରେ ଗୋଟେ ଗ୍ରେଟ ପଡ଼ିଆ । ପଡ଼ିଆରେ ଗୋଟେ କଣରେ ଦଳେ ହରିଣ ଚରୁଥାନ୍ତି । ସେମାନଙ୍କ ଉପରେ ସ୍ପଟ୍‌ଲାଇଟ୍ ଆଲୁଅ ପଡ଼ିବାରେ ଝକ୍‌କାମାରି ଠିଆହୋଇଗଲେ । ଗୋରାଭାଇ ତାଙ୍କ ଟେଲିସ୍କୋପିକ୍ ରାଇଫଲ୍ ଠିକ୍‌କରି ଲକ୍ଷ୍ୟନେବାରେ ଲାଗି-ଯାଇଥାନ୍ତି । ସେତେବେଳ ପର୍ଯ୍ୟନ୍ତ ବାବୁଲି ସମ୍ଭାଳି ନପାରି ଜିପ୍‌ରୁ ଡେଇଁପଡ଼ି, ହେଡ୍‌ଲାଇଟ୍ ଧରି ହରିଣଦଳଙ୍କ ପିଛାକଲା । ସେତେବେଳକୁ ଦଳଟାଯାକ ଜଙ୍ଗଲ-ଆଡ଼େ ଚାଲିବା ଆରମ୍ଭ କରିଦେଇଥାନ୍ତି । ବାବୁଲିକୁ ଦେଖି ଗୋରାଭାଇ ତାଙ୍କ ରାଇଫଲ୍ ଫେରେଇ ଆଣିଲେ ।

ଅଳ୍ପସମୟ ଭିତରେ ବାବୁଲି ଜଙ୍ଗଲ ଭିତରେ ଅଦୃଶ୍ୟ ହୋଇଗଲା । ଆମେ ସମସ୍ତେ ଅପେକ୍ଷା କରିଥାଉ । ପ୍ରାୟ କୋଡ଼ିଏ ମିନିଟ୍‌ପରେ ହଠାତ୍ ଜଙ୍ଗଲ ଭିତରୁ ଗୁଳି ଆବାଜ୍ ଶୁଣାଗଲା । ସେପର୍ଯ୍ୟନ୍ତ ଘୁମଉଥିବା ବାବୁ ଜିପ୍ ଭିତରୁ ଡେଇଁପଡ଼ିଲେ । ନିଶ୍ଚୟ ଜନ୍ତୁ ପଡ଼ିଛି । ଫୁଲ୍‌କୁ ଡାକି ସେ ଜଙ୍ଗଲକୁ ଯିବାପାଇଁ ପ୍ରସ୍ତୁତ ହେଉଥାଏ । କିଛି ସମୟପରେ ବାବୁଲି ଫେରିଲା । ସମସ୍ତେ ଆଗ୍ରହ ସହିତ ଅପେକ୍ଷା କରିଥିଲୁ । ବାବୁଲି କହିଲା ଯେ ହରିଣଦଳ ପଳେଇଗଲା ପରେ ସେ ଗୋଟେ ପେଚାକୁ ଗୁଳିକଲା, ମାତ୍ର ପେଚାଟି ନମରି ତା' ମୁଣ୍ଡଉପରେ ଉଡ଼ିଗଲା ।

ସମସ୍ତେ ତା' ଉପରେ ରକ୍ତଚାଉଳ ଚେଇଁବେଇଲାପରି ହେଲେ, ମାତ୍ର କ'ଣ ବା କହିବେ । ଜଙ୍ଗଲକୁ ଅସି ଏତେ ସମୟ ନଷ୍ଟକରିବା ନିର୍ବୋଧତା ଛଡ଼ା କିଛି ନୁହେଁ ।

ଜିପ୍ ପୁଣି ଜଙ୍ଗଲରାସ୍ତା ଦେଇ ଆଗକୁ ଚାଲିଲା । ଏଥରକ ବାବୁଲକୁ ମନାକରାଗଲା ଯେ ଜନ୍ତୁ ଦେଖିଲେ ଗୋରାଭାଇ ମାରିବେ, ସେ ମାରିବ ନାହିଁ । ସବୁ ଶିକାରୀଙ୍କୁ ମାରିବାପାଇଁ ସୁବିଧାଦେବା ଦରକାର । ତା'ଛଡ଼ା ବାବୁଲ ଦୁଇ ଦୁଇଥର ଫେଲ୍ ମାରିଲାଣି । ସମସ୍ତେ ରାଜିହେଲେ । ଗୋରାଭାଇ ତାଙ୍କ ରାଇଫଲ୍ ଧରି ଆଗରେ ବସିଲେ ।

ପ୍ରାୟ ରାତି ଗୋଟେବେଳକୁ ଅମ ଜିପ୍ ଗୋଟେ ଶାଗୁଆନ୍ ବଗିଚାପାଖେ ପହଞ୍ଚିଲା । ନୂଆହୋଇ ଶାଗୁଆନଗଛ ଲଗାହୋଇଥାଏ । ଦୁଇ ତିନିଫୁଟ ଉଚ୍ଚ ଗଛରେ ଗୋଟେ ଶାଗୁଆନ ବଗିଚାଟି ପୂର୍ଣ୍ଣ । ଆମ ଜିପ୍ ପାହାଡ଼ମୁଣ୍ଡିଆ ଉପରୁ ଗଡ଼ୁଥାଏ । ତଳ ଡାହାଣପଟ ସାଇଡ୍‌ରେ ଶାଗୁଆନ ବଗିଚା । ସ୍ପଟ୍‌ଲାଇଟ୍‌ରେ ଦେଖିଲୁ, ଶାଗୁଆନ ବଗିଚା ମଝିରେ ପ୍ରାୟ ଶହେଫୁଟ ଦୂରରେ ଗୋଟାଏ ହରିଣୀ ତା' ଛୁଆ ସଙ୍ଗେ ଚରୁଥିଲା । ମା' ହରିଣୀ ଜିପ୍‌ର ଶବ୍ଦ ପୁଣି ତଟସ୍ଥ ହୋଇ ଘାସ ଉପରୁ ମୁହଁଉଠେଇ ଆମ ଆଡ଼େ ଚାହିଁଥାଏ । ଅଖିରେ ସ୍ପଟଲାଇଟ୍ ପଡ଼ିଲାପରେ ସେ ଆଗକୁ କି ପଛକୁ ଯାଇପାରୁନଥାଏ । ମାତ୍ର ଦୁଇ ତିନିମାସର ଗୋଟେ ହରିଣଛୁଆଟି ଗାଡ଼ିର ଶବ୍ଦ ଆଉ ସ୍ପଟ୍‌ଲାଇଟ୍ ଆଲୁଅ ଦେଖି ବେଶ୍ ଖୁସି ହୋଇଉଠିଥିଲା । ଗୋଟେ-ଲାଙ୍ଗୁଡ଼ ହଲେଇ ହଲେଇ ସେ ଆମ ଜିପ୍ ଆଡ଼କୁ ଗୋଟେ ଗୋଟେ ପାହୁଲ ପକେଇ ଆଗେଇ ଆସୁଥାଏ ।

ଦୁଇଦୁଇଟା ଜନ୍ତୁ ଏତେ ପାଖରେ ଦେଖି ବାବୁଲ ବ୍ୟସ୍ତହୋଇ ଗୋରାଭାଇଙ୍କୁ ଚୁପ୍‌ଚୁପ୍ କହୁଥାଏ ଜଲ୍‌ଦି ମାରିବାକୁ । ହରିଣଛୁଆଟି ଯେତିକି ଆଗକୁ ଆସୁଥାଏ, ବାବୁଲ ମନ ସେତିକି ଅସମ୍ଭାଳ ହୋଇଉଠୁଥାଏ । ଗୋରାଭାଇ ସେତେବେଳକୁ ତାଙ୍କ ରାଇଫଲ୍‌ରେ ନିଶାଣ ନେଉଥାନ୍ତି । ସେତେବେଳକୁ ମା'ହରିଣୀ ଜାଣି-ପାରିଥିଲା ଯେ ବିପଦ ଘନେଇ ଆସୁଛି । ମୁଁ ସ୍ପଟ୍‌ଲାଇଟ୍‌ରେ ପରିଷ୍କାର ଦେଖୁଥାଏ ମା' ମନରେ ବ୍ୟାକୁଳତା କିନ୍ତୁ ଛୁଆକୁ ଛାଡ଼ି ମା' ଯାଇପାରୁ ନଥାଏ । ମାତ୍ର ଛୁଆ ମା' କଥାକୁ ଭୁଲିଯାଇ ତା' ପିଲାମନରେ ଦେଖୁଥିବା ନୂଆ ଜିନିଷକୁ ଆବିଷ୍କାର କରିବା ମନନେଇ ଶିକାରୀର ବନ୍ଧୁକମୁନ ଆଡ଼କୁ ଆଗେଇ ଆସୁଥାଏ ।

ଛୁଆ ପାଇଁ ମା' ମନରେ ବ୍ୟାକୁଳତା—ସେ ମଣିଷ ହେଉ ବା ପଶୁ ହେଉ । ମା'ହରିଣୀ ଛୁଆକୁ ଛାଡ଼ି ଯାଇପାରୁନଥାଏ । ମୋତେ ଜଣାପଡ଼ୁଥିଲା, ତା' ଅଖିରୁ

ଦୁଇଧାର ଲୁହ ଝରିପଡ଼ୁଛି । ସେ ବ୍ୟାକୁଳ ମନରେ ଯେପରି ଭଗବାନଙ୍କୁ ଡାକ ପକେଇଛି–ପ୍ରଭୁ—ରକ୍ଷାକର ପ୍ରଭୁ ··

ଗୋରାଭାଇର ଜେଦ ଦେଖି, ବାବୁଲ ଅସ୍ଥିର ହୋଇ ତା' କାନ୍ଧଉପରକୁ ବନ୍ଧୁକ ନେଲା । ଗ୍ଲେଟ ମିରଗଛୁଆର ଗ୍ଲେଟ ଗ୍ଲେଟ ପାହୁଲପକେଇ ଶିକାରୀ ଆଡ଼କୁ ନର୍ଭୟରେ ଆଗେଇ ଆସୁଥିବାରୁ ତା' ଶିକାରୀମନ ସହ୍ୟ କରିପାରୁନଥିଲା । ସେ ଗ୍ଲେଟଛୁଆଟି ଉପରକୁ ଲକ୍ଷ୍ୟ କରି ବନ୍ଧୁକ ଉଠାଇଲା । ଗୋରାଭାଇ ଲକ୍ଷ୍ୟ କରିଥାଏ, ମା'ହରିଣୀ ଉପରକୁ । ମୁହୂର୍ତ୍ତିକ ଭିତରେ ଗୁଳି ଫୁଟିବ···। ମୋ ହାତମୁଠାରେ ସ୍ପଟ୍‌ଲାଇଟ୍ ନିଷ୍ପଳଭାବେ ମା'–ଛୁଆକୁ ଦେଖାଇ ଦେଉଥାଏ, ଶିକାରୀଙ୍କ ନିର୍ଭୁଲ୍ ଲକ୍ଷ୍ୟପାଇଁ ।

ମୁହୂର୍ତ୍ତିକୁ ଅପେକ୍ଷା । ମା'ହରିଣୀ ନିଷ୍ପଳ ଆଖିରେ ସେ ମୁହୂର୍ତ୍ତିକୁ ଅପେକ୍ଷା କରିଥାଏ···ଆଉ ଆମେ ସମସ୍ତେ । ଆଖିପିଛୁଳାକେ ଆମ ଜିପ୍ ଗୁରିପଟେ ଗୋଟେ ଗ୍ଲେଟ ଘୂର୍ଣ୍ଣିବାତ୍ୟା (ଝଣ୍ଟି ଆଭୂତ)ର ସୃଷ୍ଟି ହେଲା । ଆମେ କିଛି ଭାବିବା ପୂର୍ବରୁ ଜଙ୍ଗଲର ଶୁଖିଲାପତ୍ର, ଧୂଳି ଆମ ଜିପ୍ ଗୁରିପଟେ ଏକ ଶନ୍ଦଜାଲ ଘେରିଗଲା । ହଠାତ୍ ସ୍ପଟ୍‌ଲାଇଟ୍ ଲିଭିଗଲା ଆଉ ତା'ରି ଭିତରେ ବାବୁଲି ବନ୍ଧୁକରୁ ଗୁଳି ଫୁଟାଇଥିଲା । ସବୁ ଘଟିଗଲା ଗୋଟାଏ ମୁହୂର୍ତ୍ତି ସମୟ ଭିତରେ । ଘୂର୍ଣ୍ଣିବାତ୍ୟା ଜିପ୍ ଉପରଦେଇ ଗ୍ଲିଗଲା । ପୁଣି ସ୍ପଟ୍‌ଲାଇଟ୍ ଜଳିଉଠିଲା । ମାତ୍ର ଆମ ଆଗରେ ହରିଣୀ କି ତା' ଛୁଆ ନଥିଲେ ।

ଆମେ ପାଟିଖୋଲିବା ପୂର୍ବରୁ, ପଛପଟୁ ଥାନାବାବୁ ପାଟିକରି ଉଠିଲେ, "ଏବେ ତ ବୁଝିଲେ ସାର୍···। ସବୁକଥାକୁ ଥଟ୍ଟାରେ ଉଡ଼େଇଦେବା ଠିକ୍ ନୁହେଁ । ଆମ ପୂର୍ବପୁରୁଷ ବୋକା ନଥିଲେ । ସେମାନେ ଅଦୃଶ୍ୟର ହାତକୁ ମାନି ଆସିଛନ୍ତି । ଆପଣମାନେ ବିଦେଶୀ ପାଠପଢ଼ି ଦେଶୀବିଦ୍ୟାକୁ ଭୁଲିଯାଉଛନ୍ତି ।"

ରାତି ପ୍ରାୟ ଦୁଇଟା ହେବ । ନିବିଡ଼ ଘଞ୍ଚଜଙ୍ଗଲ । ଆମେ ଜିପ୍‌ରୁ ଓହ୍ଲାଇଲୁ —ଦେଖିଲୁ ଦୁଇଟି ଚକା ପଙ୍କଚର୍ ହୋଇଯାଇଛି ।

# ଅନ୍ତର୍ଦାହ

ମୋ ନାଁ ତାରା । ବାପାଙ୍କ ନାଁ ମୃଦୁଲ ବେହେରା । ଗ୍ରାମ-ବଳଦେବପୁର, ଥାନା-ଧର୍ମଶାଳା, ଜିଲ୍ଲା-ଯାଜପୁର । ମୁଁ ଆଜି ଜଜସାହେବଙ୍କ ସାମ୍ନାରେ ଠିଆହୋଇ ଏଇ ଅଦାଲତରେ ମୋ ବୟାନ ଦେଉଛି ଯେ ମୁଁ ଯାହା କହୁଛି ସତକଥା—ମୋ ଅଙ୍ଗେ ଲଗାଇବା କଥା । ମୋ ନାଁରେ କିଏ କେତେ କଥା କହୁଛି, କିଏ କେତେ କଥା ଛାପୁଛି ବୋଲି ମୁଁ ଶୁଣିଛି । ପିଲାଦିନୁ ତ ପାଠପଢ଼ିନି, ପଢ଼ିଥିଲେ ଏବା ଛାପୁଥିବା ଖବର ପଢ଼ି ବୁଝନ୍ତି । ଆସିଲାବେଳେ ପୁଲିସବାବୁ କହିଥିଲେ, ସତ ସତ କଥା କହିବୁ, ଯାହା ଆମ ଆଗେ କହିଥିଲୁ ସେଇକଥା କହିବୁ । ସେ କଥା ଠିକ୍ କରି ନକହିଲେ, ଦୋଷୀ କୁଆଡ଼େ ଦଣ୍ଡ ପାଇବନି ।

ଆମ ଗାଁରେ ଶୁଣିଥିଲି ଦୋଷୀ ଆଉ କୁଆଡ଼େ ଦଣ୍ଡ ପାଉନାହାନ୍ତି । ଶହେ ଜଣରୁ ପାଞ୍ଚ ସାତଟା କୁଆଡ଼େ ଦଣ୍ଡପାଆନ୍ତି, ସେ ପୁଣି ଗରିବଗୁରୁବା ହୋଇଥିଲେ । ଧନୀ, ପଇସାବାଲା, ନେତାମାନଙ୍କ ପାଇଁ ଦଣ୍ଡ ବହୁତ ଦୂରରେ । ସେମାନେ କଳାକୁ ଧଳା, ଧଳାକୁ କଳା କରିପାରନ୍ତି । ଜଜ୍ ଅଦାଲତ୍ ତାଙ୍କ କଥାକୁ ବିଶ୍ୱାସ କରନ୍ତି । କାରଣ ସେମାନେ ନାମୀ ଦାମୀ ଓକିଲ ଦେଇପାରନ୍ତି । ମୋତେ ସେଥିରୁ କ'ଣ ମିଳିବ । ମୋ କଥା ମୁଁ କହିବି । ଜଜ୍‌ସାହେବ ବିଚାରକୁ ନେବେ ।

ସମସ୍ତେ ଶୁଣନ୍ତୁ—ଜଜ୍ ସାହେବ, ଅଦାଲତରେ ଯେତେ ଦର୍ଶକ, ଓକିଲ ମହକିଲ ମୋ କଥା ଯେ ଖବରକାଗଜରେ ବାହାର କରିଥିଲେ, ସେମାନେ ମଧ୍ୟ ଏଇ ଅଦାଲତରେ ଅଛନ୍ତି । ସେମାନେ ଶୁଣିବେ ଏବଂ ଖବରକାଗଜରେ ଛାପିବେ । ଛାପିଲେ ଯେଉଁମାନେ ଏଠି ଶୁଣିପାରୁ ନାହାନ୍ତି, ପଢ଼ି କରି ଜାଣିବେ ।

ମୋର ବର୍ତ୍ତମାନ ବୟସ କୋଡ଼ିଏ । ଦେହରେ ଭରା ଯୌବନ । ଆଜିକୁ ପ୍ରାୟ ବର୍ଷେକ ତଳେ ଗାଁରୁ ଲୁଚିକରି ପଳେଇ ଆସିଥିଲି ଏଇ କଟକ ସହରକୁ । ଗାଁରେ ମୋର ବାପ, ମା ଆଉ ଦୁଇଟି ଭଉଣୀ । ମୋ ଉପରେ ବଡ଼ ଭାଇ । ବାପାଙ୍କର ସମ୍ପତ୍ତି ନାହିଁ କି ବାଡ଼ି ଗୋବରରେ ଗୋବେ ଜମିନାହିଁ । ପାରାଦ୍ୱୀପ,

ଚିଲିକାଅଡ଼ୁ ମାଛ, ଶୁଖୁଆ ଆଣି ଗାଁଗଣ୍ଡାରେ ମୁଣ୍ଡରେ ଧରି ବିକି କରନ୍ତି । ସେଥିରୁ ଯାହାକିଛି ମିଳେ ଆମେ ସମସ୍ତେ ଚଳୁ । ବଡ଼ଭାଇ କୁମର, ଏଇ ବର୍ଷେ ହେଲା ସୁକିନ୍ଦା ମାଇନିଂ ଆଡ଼େ କାମ କରେ । ସେ କାମ ବି ସେମିତି । ବର୍ଷକେ ପାଞ୍ଚଥର ତାଲାବନ୍ଦ, କାମବନ୍ଦ । କୁଆଡ଼େ ଶ୍ରମିକ ଦଳ ଭିତରେ ଗଣ୍ଡଗୋଳ । ଯଡ଼େଇ ଦଳ ନାଏକ ଦଳ ମଧ୍ୟରେ କନ୍ଦଳ । କନ୍ଦଳ ଯୋଗୁ ମାଇନିଂ ବନ୍ଦହୁଏ । ଗରିବଗୁରୁବା କାମ କରୁଥିବା ଶ୍ରମିକ ବସିପଡ଼େ । କାମ ନାହିଁ ତ ଦରମା ନାହିଁ । ଭାଇ ମୋର ସେଇ ଅଡ଼ୁଆକାମ ଭିତରୁ ଯେତିକି ପାଏ ତା'ର ପାରୁପର୍ଯ୍ୟନ୍ତ ବାପକୁ ସାହାଯ୍ୟ କରେ । କ'ଣ କରିବ ସେ ବି ତ ପିଲା, ମୋଠାରୁ ଦୁଇବର୍ଷ ବଡ଼ । ମୋତେ ବାପା ସ୍କୁଲକୁ ପାଠ ପଢ଼େଇବାକୁ ପଠେଇଲାରୁ ମା କହିଲା, ପାଠ ପଢ଼ିଲେ ପାଠୁଆଜ୍ୱାଇଁ ଦରକାର । ଆଉ ପାଠୁଆଜ୍ୱାଇଁ କ'ଣ ମାଗଣାରେ ମିଳିବେ ? ତାଙ୍କୁ ପାଇବା ପାଇଁ କେତେ ଯେ ଯାନିଯଉତୁକ ଲୋଡ଼ା । ମୋର ପାଠପଢ଼ା ବାପ-ମାଙ୍କ କଥା ଭିତରେ ହିଁ ରହିଗଲା । ଗାଁ ସ୍କୁଲକୁ ସିନା ବାହାରୁ ଦେଖିଛି, ହେଲେ ସେ ଘର ଭିତରକୁ ପଶି ପାରିଲିନି ।

ପାଠ ନପଢ଼ିଲେ କ'ଣ ବୟସ କାହାକୁ ଅପେକ୍ଷା କରେ । ମୁଁ ବଢ଼ିଲି । ଘରକାମରେ ମା'କୁ ସାହାଯ୍ୟକରେ । ଗାଁର ସାଥୀସଙ୍ଗାତଙ୍କ ସଙ୍ଗେ ବୁଲେ । ମୋ ଦେହରେ ସେତେବେଳେ ଯୌବନର ଛାପ ଦେଖାଦେଲା, ଗାଁର ସବୁ ଝିଅଙ୍କ ପରି ମୋ ମନରେ ମଧ୍ୟ ରଙ୍ଗ ଧରିଥିଲା । ଆଉ ସେଇ ରଙ୍ଗରେ ମୁଁ ରୂପଦେଲି ଆମଗାଁ ଝଣ୍ଟାସୁତ ସାଇର ବଳିଆ ରାଉତକୁ ଭଲପାଇ । ଭଲପାଇବାରେ କ'ଣ ଦୋଷଅଛି ? ମୁଁ ଗୋଟେ ଝିଅ, ମୁଁ ଗୋଟେ ପୁଅକୁ ଭଲପାଇବିନି ତ ଆଉ କ'ଣ କୁକୁର ମାଙ୍କଡ଼କୁ ଭଲପାଇଥାନ୍ତି, ପ୍ରେମ କରିଥାନ୍ତି । ମୋ ଭଲପାଇବାଟା କୁଆଡ଼େ ଅପରାଧ ହେଲା । ଆମ ଦୁଇଜଣଙ୍କ ମିଳାମିଶା, କଥାବାର୍ତ୍ତା, ଯିବାଆସିବା ଆମ ସମାଜ ଆଖିରେ କୁଆଡ଼େ ଭଲ ଦିଶିଲାନି । ଆମେ ତ ଏକାଗାଁର ଝିଅ-ପୁଅ । ଗାଁ ବାଟରେ ଦେଖା ହେବନି ତ କଣ କଟକ ସହରରେ ଆସି ଭେଟିବା ? ଗାଁ ମୁଖିଆ ବାଡ଼ିପଣା କହିଲା ଏପରି ଦେଖା-ସାକ୍ଷାତ ଅଶୋଭନୀୟ । କଟକ ସହରରେ ଦିନ ଦିପହରରେ ସିନେମା ହଲ୍‌ରେ ଯେଉଁ ଲଙ୍ଗଳା ଛବି ଚାଲୁଛି, ସେଥିରେ କ'ଣ ଆଉ ଦେଖାଇବାକୁ ବାକି ରହୁଛି ? ମୁଁ ଯେଉଁଦିନ ଏ ଛବି ଦେଖିଲି ସେଇଦିନ, ସେଇ ଅଳପେଇଶା ମୁଖିଆ ଦାମ ରାଉତ କଥା ମନେପଡ଼ୁଥିଲା । ଠାକୁରାଣୀପାଖ ଆମ୍ବଗଛ ପାଖେ ଆମେ କଥାବାର୍ତ୍ତା ହସଖୁସି ହେଉଥିଲୁ । ତାରି ଉପରେ ଆମ ଦୁହିଁଙ୍କୁ ନେଇ ଗାଁରେ ବସୁର ବସିଲା । ସମସ୍ତେ କହିଲେ ମୁଁ ଗୋଟେ ଦୋଷୁରୁଣୀ । ମୋ ବାପାକୁ ମୋତେ ଜବତ୍ କରିବାକୁ କହିଲେ । ବଳିଆକୁ ମଧ୍ୟ ତାଗିଦ୍ ହେଲା । ଆମେ ଦୁହେଁ କେହି କାହାକୁ ଦେଖା କରିପାରିବୁନି । କାଳରେ ସେ କୁଆଡ଼େ ବଡ଼ ଖଣ୍ଡେଇତ ଆମ ଜାତି ଶ୍ରେଷ୍ଠ

କେଉଁଠି । କିନ୍ତୁ ଏ ଜାତିଭେଦ କ'ଣ ଭଲପାଇବାକୁ ବାନ୍ଧିପାରେ ନା ବର୍ଷାଦିନ ବ୍ରାହ୍ମଣୀ ନଦୀର ଦୁଇକୂଳକୁ ଛୁଇଁ ଯାଉଥିବା ବଢ଼ିପାଣିକୁ କିଏ ଅଟକାଇ ଦେଇପାରେ । ଗାଁରେ ଥିଲା ନିଶାପ ହେଲା, ନ୍ୟାୟ ହେଲା କିନ୍ତୁ ଆମ ମନର ନ୍ୟାୟନିଶାପ ତାକୁ ମାନିଲାନି ।

କୃଷ୍ଣଙ୍କ ବଂଶୀସ୍ୱରରେ ରାଧା ବାଉଳି ହେଲା ଭଳି ସେଇ ବଳିଆର ପାଟି ମୋତେ ବାଉଳି କରିଦେଲା । ଏଥର ଜକ ଆମେ ଲୁଚିଛପି ମିଶିଲୁ ଗାଁ ପାଖ ଆମ୍ବତୋଟା ନଦୀକୂଳ ପଠାପାଖେ । ବିଲମାଳରେ ଆମର ଦେଖା ହୁଏ । ବଳିଆ କହୁଥିଲା— ଯେ ଯାହା କୁହନ୍ତୁ ପଛେ ସେ ମୋତେ ନିଶ୍ଚୟ ବାହାହେବ । ନଦୀ ଜଳକୁ ସାକ୍ଷୀରଖି ସେ ମୋ ଆଗେ ଶପଥ କରିଥିଲା । ମୋ ମୁହଁରେ ମୁହଁରଖି କହୁଥିଲା, ମୋଲାଗି ସେ ଘରବାଡ଼ି ବାପାମା'ଙ୍କୁ ଛାଡ଼ି ଦରକାର ହେଲେ ଚାଲିଯିବ । ଆମ ଭଲପାଇବାକୁ କେହି ରୋକି ପାରିବେନି, ଗାଁର ସେ ସବାଛିଆ ମୁଖିଆ ଦାମ ରାଉତ ହେଉ କି ରାଜବୋପା ହେଉ । ସେଇ କଥା ହିଁ ଘଟିଲା । ଆମ କଥା ଗାଁରେ ଡିବିଡିବି ହୋଇ ବାଜିଲା । ଆଉ ଥରେ ଗାଁରେ ନିଶାପ ବସିଲା । ମୋ ବାପ ଉପରେ ଜୋରିମନା ବସେଇଲେ । ଜୋରିମନା ନଦେଲେ ଘର ଭିତରୁ ଅଧେ ଗାଁବାଲା ନେଇଯିବେ ବୋଲି ଧମକ ଦେଲେ । ନିଶାପରୁ ଫେରି ବାପା ମୋତେ ଟାଙ୍ଗେ ଛେଚିଲା । ଅଦା, ରସୁଣକୁ ଛେଚିଲାପରି ମୋ ଉପରେ ବିଧା, ଗୋଇଠା ବୃଷ୍ଟି ହେଲା । ଯେମିତି ମୁଁ କିଛି ଏପରି କରିପକାଇଛି ଯାହାପାଇଁ ଆମ ସମାଜ, ଆମ ଜାତି, ଆମ ଦେଶ, ଆମର ଆଇନ୍, ସବୁକିଛି ତା'ପାଇଁ ବିପନ୍ନ ।

ମାଡ଼ଖାଇ ବ୍ରାହ୍ମଣୀ ନଈକୂଳକୁ ଯାଇଥିଲି ନଈରେ ବୁଡ଼ି ମରିବାକୁ । ସେଇ ବଳିଆ, ମୋତେ ଯେ ଭଲପାଉଥିଲା, ଲୁଚିଛପି ଆସି ମୋ ପାଖରେ ନଈକୂଳେ ପହଞ୍ଚିଲା । ପାଣିରେ ବୁଡ଼ି ମରିବାକୁ ମନାକଲା । ବହୁତ ଆଶ୍ୱାସନା କଥା କହିଲା । ଆମେ ଦୁହେଁ ମନ ଦୃଢ଼କରି ବାହାରି ପଡ଼ିଲୁ । ଗାଁ ଛାଡ଼ିଲୁ । ସେଇ ନଈକୂଳରୁ ଚାଲି ଚାଲି ଚଣ୍ଡିଖୋଲ ଛକ ପାଖରୁ ଟ୍ରକ୍‌ରେ ବସି କଟକ ଆସିଲୁ । ପାଖରେ ପଇସା ନଥାଏ । ବଳିଆ ମୋତେ ବାଦାମବାଡ଼ି ବସ୍‌ଷ୍ଟାଣ୍ଡରେ ବସେଇ-ଦେଇ ଗଲା ପଇସା ପାଇଁ । ତାର ସାଙ୍ଗ କଟକରେ କାମ କରୁଥିଲା ।

ବସ୍‌ଷ୍ଟାଣ୍ଡରେ ବସିଥିଲାବେଳେ ମୋ ମନରେ କେତେ ଭୟ, କେତେ ଆଶଙ୍କା । ନିଜ ଅଞ୍ଚଳଭେଇ ନଥିବା ଯୁବତୀ ଝିଅ କେବେ ବିଶ୍ୱାସ କରିପାରିବନି । କଟକର ସବୁ ଛିତରଙ୍କ ଜାଗା ବସ୍‌ଷ୍ଟାଣ୍ଡ । ପକେଟମାରୁ ଠାରୁ ଆରମ୍ଭ କରି ଚୋର ଡକାୟତଙ୍କ ପର୍ଯ୍ୟନ୍ତ । ଏକୁଟିଆ ବସିଥିଲାବେଳେ କେତେ ଯେ ମୋଆଡ଼େ ନଜରମାରି ଯାଉଥାନ୍ତି ତାର ସଂଖ୍ୟା ନାହିଁ ।

ରାତି ଦଶଟା ବେଳକୁ ବଜାଆ ଫେରିଲା । ସାଙ୍ଗରେ ତା'ର ସାଙ୍ଗ ନକୁଳ । ସେ ପ୍ରେସ୍‌ରେ କାମକରେ । ମାସକୁ କୁଆଡ଼େ ହଜାରରୁ ଅଧିକା ଟଙ୍କାପାଏ । ସେ ଆମକୁ ଡାକିନେଲା । ରହୁଥିଲା ହରିପୁର ରୋଡ଼ରେ ଗୋଟେ ଶ୍ଳେଟଘରେ । ରାତିଟା ଯାଏଁ ଆମେ ସେଇଠି ରହିଗଲୁ । ବିଚରା ନକୁଳ ଆମ ପାଇଁ ବହୁତ କଷ୍ଟ ପାଇଲା । ଦୁଇ ତିନିଦିନ ତା' ଘରେ ରହିଲାପରେ, ନକୁଳ ତା ସାଙ୍ଗ ବଜାଆ ପାଇଁ ଶ୍ଳେଟ କାମଟିଏ ବୁଝିଦେଲା । ରାତିରେ ଗୋଟେ ଗୋଦାମଘର ଜଗିବ, ମାସକୁ ଦରମା ଛଅଶହ ଟଙ୍କା । ଏକଥା ଶୁଣି ମୋ ମନ କାହିଁରେ କେତେ ଖୁସି । ମା' ଜାଗୁଲେଇଙ୍କୁ ଜଣେଇଲି, କେବେ ଯଦି ଗାଁକୁ ଯାଏ ତା'ହେଲେ ତା' ପାଖେ ନିଶ୍ଚୟ ମାଜଣା କରେଇବ । ଭୋଗ ଲଗେଇବ । ବଜାଆ କାମରେ ଯୋଗଦେବା ପରେ ଆମେ ନକୁଳଘରୁ ଯାଇ ଗୋଟେ ଶ୍ଳେଟ ଛାଳଘରେ ରହିଲୁ । ଆମପରି କେତେଲୋକ କଟକ ସହରର ଏଇ ନାଳ ନର୍ଦ୍ଦମା ଉପରେ ଝୁମ୍ପୁଡ଼ି କରି ରହୁଛନ୍ତି । ମାସକୁ ଝୁମ୍ପୁଡ଼ି ଭଡ଼ା ତିରିଶଟଙ୍କା । ଆମ ଗୃହେପେଟେ ନାନା ଜାତିର ଲୋକ । ତେଲଙ୍ଗା ରିକ୍ସାବାଲାଙ୍କଠାରୁ ଆରମ୍ଭ କରି ରେଫେଉଜି ବଙ୍ଗାଳୀ ପର୍ଯ୍ୟନ୍ତ । ସମସ୍ତେ ଭିନ୍ନ ଭିନ୍ନ ପ୍ରକାର କାମ କରନ୍ତି । ଦିନଯାକ କାମପରେ ରାତିରେ ହିଁ ଏଇ ନାଳ ଉପରେ ଝୁମ୍ପୁଡ଼ି ସବୁ ଜମିଉଠେ ।

କେତେପ୍ରକାର ଚିତ୍କାର, ପାଟି, ସ୍ୱର, ନାନା ଭଙ୍ଗି, ନାନା ଠାଣି । ଦେଶୀମଦର ପ୍ରକୋପ ଏଠାରେ ସବୁଠାରୁ ବେଶି । ସନ୍ଧ୍ୟା ହେଉ ହେଉ କୋଚଆବାଲା ବୁଲିଯାଏ । ସକାଳୁ ଓମ୍‌ଫେଡ୍ ଗାଡ଼ି ବୁଲି ବୁଲି ଦୁଧ ଦେଲାପରି, ଦେଶୀମଦ କୋଚଆ ବାଲା ଝୁମ୍ପୁଡ଼ିରୁ ଝୁମ୍ପୁଡ଼ି ବୁଲିଯାଏ । କାମରୁ ଫେରି ମରଦମାନେ ନିଶାପାଣିରେ ମଜି ଯାଆନ୍ତି । ନିଶାପାଣିରେ ମନେପଡ଼େ ତାଙ୍କର ସେଇ ଦୁର୍ବିସହ ଅନଟନର ସଂସାର । ପିଲାଙ୍କର ଲଙ୍ଗଳା ଦେହ । କିନ୍ତୁ ନିଶା କ'ଣ ତାଙ୍କୁ ଛାଡ଼େ । ସେଇ ମୁହୂର୍ତ୍ତରେ ସେମାନେ କ'ଣ ଭାବନ୍ତି କେଜାଣି —ବସ୍ତି କମ୍ପିଉଠେ । କେଉଁ ଝୁମ୍ପୁଡ଼ିଘରେ ସ୍ତ୍ରୀମାନଙ୍କର ମର୍ମଫଟା କାନ୍ଦଣା । ମଦୁଆ ଘଇତାମାନଙ୍କର ଘରଣୀ ଉପରେ ଅକଥନୀୟ ଅତ୍ୟାଚାର । ପିଲାମାନଙ୍କର ଚିତ୍କାର । ରାତି ବଢ଼ିବା ସଙ୍ଗେ ସଙ୍ଗେ ପୁଣି ଏଇ ଝୁମ୍ପୁଡ଼ିବସ୍ତି ଆସ୍ତେ ଆସ୍ତେ ନିଦ୍ରେ ହେବାକୁ ଲାଗେ । ତାରି ଭିତରେ ମାଡ଼ଖାଇ କିଛି ସମୟ ପୂର୍ବେ କାନ୍ଦୁଥିବା ଘରଣୀମାନଙ୍କୁ ପୁରୁଷମାନେ ଭିଡ଼ି ନିଅନ୍ତି । ପୁରୁଷତ୍ୱର ଜାହିର ଚାଲେ । ଅଧାଭଙ୍ଗା, ଅଧାଖୋଲା, ଛିଣ୍ଡାଅନ୍ଧାରିଆ ଏଇ ଝୁମ୍ପୁଡ଼ି ଭିତରେ ସମସ୍ତେ ଆଦିମପିପାସା ତୁଟାଇବାରେ ଲାଗିପଡ଼ନ୍ତି । ପ୍ରତ୍ୟେକଦିନ ଝୁମ୍ପୁଡ଼ି ବସ୍ତିରେ ନୂତନ ଶିଶୁର କାନ୍ଦଣା ଶୁଭେ । ଝୁମ୍ପୁଡ଼ି ବସ୍ତି ବଢ଼ିଉଠେ ଅଧା ଲଙ୍ଗଳା ଭୋକିଲା ଛୁଆଙ୍କୁ ଧରି, ଯାହାର ମୁଣ୍ଡରେ ବର୍ଷ ବର୍ଷ ଧରି ତେଲ ଲାଗେନି । ଏ ସମସ୍ତେ ଆମ ଦେଶର ଭାବୀ ନାଗରିକ । ଆମ ଦେଶର ସମ୍ବିଧାନ

ଏମାନଙ୍କୁ ସମାନ ଅଧିକାର ଦେଇଛୁ । ଏମାନେ ବଡ଼ହେଲେ ଭୋଟ ଦେବେ । ଦେଶରେ ଶାସନକଳକୁ ଚାଲୁରଖିବେ ଏବଂ ଏମାନଙ୍କ ପିଲା ନର୍ଦ୍ଦମାକୂଳରେ ଝୁମ୍ପୁଡ଼ି ବସ୍ତିରେ ବଢ଼ି ଚାଲିବେ, ଯେମିତି ବର୍ଷାଦିନର ତେଲୁଣି ପୋକର ମହାପର୍ବ । ଏମାନଙ୍କ ପାଖରେ ଦଶତାଲାର କୋଠା ଉଠୁଛି, ଏଇମାନଙ୍କର ଲଙ୍ଗଳା ଭୋକିଲା ଛୁଆ ବାବୁମାନଙ୍କର ମଟରଗାଡ଼ି ତଳେ ଚାପାଖାଇ ନର୍ଦ୍ଦମାରେ ପଡ଼ି ସଡ଼ି ଯାଉଛନ୍ତି । ପୁଣି ଏଇମାନେ ସମାନ ଅଧିକାର ନେଇ ସେମାନଙ୍କ ସାଙ୍ଗରେ ଲଇନ୍ ଲଗାଇ ତାଙ୍କର ସାମ୍ବିଧାନିକ ଅଧିକାରକୁ ଜାହିର କରୁଛନ୍ତି ।

ଜଜ୍ ସାହେବ—ମୁଁ ମୋ ନିଜ କଥା କହୁକହୁ ବାହାର କଥା କହିଦେଲି । ସେ କଥା ବି ମୋ ଅଙ୍ଗେ ଲିଭେଇବାର କଥା । ବଳିଆ ସଙ୍ଗେ ଏଇ ବସ୍ତିରେ ମୁଁ ରହିଲି ପ୍ରାୟ ଦୁଇମାସ । ପ୍ରଥମ ମାସର ଦରମା ପାଇ ସେ ମୋ ପାଇଁ ଆଣିଥିଲା ଖଣ୍ଡେ କସ୍ତା ଶାଢ଼ି, ଗୋଟେ ପାଉଡ଼ର, ଟୁଥ୍‌ପେଷ୍ଟ ଆଉ ଗୋଟେ ସାବୁନ । ନାଳକୁ ଗାଧୋଇବାକୁ ଗଲାବେଳେ ସମସ୍ତେ ସାବୁନ୍ ଧରି ଚାଲନ୍ତି । ଏଇଟା ହେଲା କଟିକା ଠାଣି । ଆମ ଗାଁ ଆଡ଼େ କୁହନ୍ତି “ବୋଉ ପଛେ ହେଉ କାଣୀ—ନାଁ ତ କଟିକିଆଣୀ” । ଝୁମ୍ପୁଡ଼ିରେ ରହିଥିଲେ ବି ମୁଁ କଟିକିଆଣୀ ପାଲଟି ଯାଇଥିଲି ।

ଦୁଇମାସ ପରେ ବଳିଆ ତା’ ଦରମା ପାଇ ଫେରିଲା ପରେ ଗାଁକୁ ଯିବ ବୋଲି କହିଲା । ଗାଁକୁ ଯିବାକୁ ତା’ ମନ ଡାକିଲା । ରାଗରେ ପଳେଇ ଆସିଲେ ବି ଗାଁ ତ ଆମର । ଆମରି ଗାଁବାଲା । ସେମାନେ କ’ଣ ଆମକୁ ଆଦରି ନେବେନି, ମୁଁ ସେଇ କଥା ଭାବିଲି । ଦିନେ ଦୁଇଦିନର କଥା । ବଳିଆ ଗାଁକୁ ଗଲା, ମୁଁ ସେଇ ଝୁମ୍ପୁଡ଼ିରେ ପଡ଼ିରହିଲି ତା ବାଟକୁ ଚାହିଁକରି । ଦିନେ ଗଲା, ଦି’ଦିନ ଗଲା, ସାତ ଦିନ ଗଲା ବଳିଆ ଆଉ ଫେରିଲାନି । ନକୁଳ ମୋତେ ଖବର ଦେଲା, ତା ବାପା, ମା’, ଗାଁବାଲା ସମସ୍ତେ ତାକୁ ପାଖ ଗାଁରେ ବାହା କରାଇ ଦେଇଛନ୍ତି । ସେ ଆଉ କଟକ ଫେରିବନି । ମୋ ମୁଣ୍ଡରେ ବଜ୍ର ପଡ଼ିଲା । ଆଖି ଖୋସି ହୋଇଗଲା । ତଣ୍ଟି ଅଠା ଅଠା ହୋଇଗଲା । ହେଲେ ମୋ ଆଖିରୁ ଧାରେ ଲୁହ ଗଡ଼ିଲାନି । ନକୁଳକୁ ଦଶଟା ଟଙ୍କା ମାଗିଥିଲି । ସେ ଦେଇଥିଲା । ସେଇଦିନ ସକାଳୁ ଓ. ଏମ୍. ପି. ଛକରୁ ବସ୍‌ଟେ ଚଣ୍ଡିଖୋଲରେ ଓହ୍ଲେଇ ଚାଲି ଚାଲି ଗାଁକୁ ଯାଇଥିଲି । ଗାଁମୁଣ୍ଡରୁ ମୋତେ ଦେଖୁ ଦେଖୁ ଗାଁଟା ଯାକର ପିଲାମାଇପେ ବାହାରି ଆସିଲେ । ମୁଁ ଯେମିତି ଗୋଟେ ଚିଡ଼ିଆଖାନାକୁ ଆସିଥିବା ନୂଆ ଜନ୍ତୁ । ଏଇ ସମୟରେ ଗାଁ ମୁଖିଆ ଆସି ମୋ ଆଗରେ ଠିଆହେଲା । ଗାଁକୁ ପଶିବାର ଅଧିକାର ମୋର ନାହିଁ । ବଳିଆବାପା ପାଞ୍ଚହଜାର ଟଙ୍କା ଗାଁଫଣ୍ଡକୁ ଦେଇ ପୁଅ ବାହା କରିଛି । ଝିଅଘରୁ ଦଶହଜାର ଆଣିଛି । ସମସ୍ତେ ମୋ ବିରୁଦ୍ଧରେ । ମୋ ବାପକୁ ତାଗିଦ ମୋତେ

ଘରେ ନ ପୂରେଇବା ପାଇଁ । ଗାଁ.ବାଲାଙ୍କ କଥାଶୁଣି ବାପା ମୋତେ ଠେଙ୍ଗା ଉଞ୍ଚେଇଲେ । ଘରକୁ ଆସିଲେ ଗୋଡ଼ ଭାଙ୍ଗିଦେବ । ଦୂରରେ ଠିଆ ହୋଇ ମା' ଆଖିରୁ ଲୁହ ଗଡ଼ାଉଥାଏ । ଯେତେହେଲେ ଜନ୍ମକଲା ମା' ତ । କେହି ମୋ ପାଇଁ ମୁହଁ ଫିଟେଇଲେନି । ମୁଁ କୁଆଡ଼େ ଦୋଗୃରୁଣୀ, ବେଧେଇ ।

ମୋ ଜନ୍ମ ହୋଇଥିବା ଗାଁରେ ମୋର ରହିବାର ଅଧିକାର ନାହିଁ । ମୋତେ ବାହାହୋଇଥିବା ସ୍ୱାମୀ ପାଖକୁ ଯିବାକୁ ମୋର ଅଧିକାର ନାହିଁ । ମୋତେ ଜନ୍ମ ଦେଇଥିବା ବାପାମା'ଙ୍କ ସଙ୍ଗରେ ରହିବାର ଅଧିକାର ନାହିଁ । ମାତ୍ର ମୋର କୁଆଡ଼େ ଅଧିକାର ଅଛି ଭୋଟଦେଇ ସରକାର ଗଢ଼ିବାର, ଯେଉଁମାନେ ଆମ ପାଇଁ, ଦେଶ ପାଇଁ ଆଇନ୍ କରିବେ । ସବୁ ନାଗରିକମାନଙ୍କୁ ସମାନ ଅଧିକାର ଦେବେ ।

ନିଜ ଜନ୍ମମାଟିକୁ ଥୁ' କରି ମୁଁ ମୁହଁ ଫେରେଇଲି । ଯେଉଁ ବାଟଦେଇ ଆସିଥିଲି ସେଇ ବାଟଦେଇ ଫେରିଲି । ଓ. ଏମ୍. ପି. ଛକ ପାଖରେ ଓହ୍ଲେଇପଡ଼ି କୁଆଡ଼େ ଯିବି, କ'ଣ କରିବି ସେଇକଥା ଭାବି ଛକ ପାନଦୋକାନ ପାଖରେ ବସିଥିଲି । ହଠାତ୍ ଜଣେ ଅଧାଲିଆ ଲୋକ ମୋତେ ଝିଅବୋଲି ଡାକିବାରେ ମୁଁ ଚମକି ପଡ଼ିଲି । ସେ ଲୋକଙ୍କୁ ମୁଁ କେବେ ଦେଖିନଥିଲି କି ଚିହ୍ନି ନଥିଲି । ସେ କହିଲେ ସେ କୁଆଡ଼େ ମୋର ମଉସା ଲେଖା ହେବେ ।

ସେ ଯାହା ହୁଅନ୍ତୁ ନହୁଅନ୍ତୁ, ମୋର ସେଇ ଅବସ୍ଥାରେ ତାଙ୍କ ମୁହଁରୁ ଝିଅ ଡାକଶୁଣି ମୋ ପାଖରେ ଦେବଦୂତ ଠିଆ ହୋଇଛନ୍ତି ପରି ଲାଗିଲା । ଭଗବାନଙ୍କ ଅଶେଷ କରୁଣା—କେହି ଜଣେ ସାହା ହେବାକୁ ଆସିଲେଣି । ସେ ମୋତେ ତାଙ୍କ ଘରକୁ ଡାକିନେଲେ । ତାଙ୍କର ବି ଘର କାହିଁ ? ସେମିତି ଗୋଟେ ଭଙ୍ଗା କୁଲିଘର । ହେଲେ ନାଳକୂଳ ଝୁମ୍ପୁଡ଼ିଠାରୁ ବହୁଗୁଣରେ ଭଲ । ସେ ମୋତେ ଝିଅ ଭଳି ରଖିଲେ । ତିନିଦିନ ପରେ ଜଣେ ଭେଣ୍ଡିଆକୁ ଡାକିଆଣି ମୋତେ ପ୍ରସ୍ତାବ ଦେଲେ ତାଙ୍କୁ ବାହା ହେବାପାଇଁ । ତା'ର କୁଆଡ଼େ ଆଗ ମାଇପ ମରିଯାଇଥାଏ । ସେ ଥାଏ ସିମେଣ୍ଟ ଗୋଦାମର ଜଗୁଆଳି । ରହୁଥାଏ ମହାନଦୀ ବିହାରରେ ।

ମୁଁ ତାଙ୍କ ପ୍ରସ୍ତାବରେ ରାଜିହେଲି । ଗୋଟେ ରିକ୍ସା କରି ଆମେ ତିନିଜଣ ଗଲୁ ଚଣ୍ଡୀମନ୍ଦିରକୁ । ଚଣ୍ଡୀମନ୍ଦିରରେ ଦୁଇଟଙ୍କାର ପ୍ରସାଦ, ଗୋଟିଏ ଧୂପଦେଇ ଆମର ବାହାଘର ହେଲା ସେଇଦିନ ସନ୍ଧ୍ୟାରେ । ମୋର ଯେ ବର ହେଲେ ତା' ନାଁ ଶଙ୍କର । ଶଙ୍କର ମୋତେ ଧରି ମହାନଦୀ ବିହାରକୁ ଆସିଲା । ଗୋଟିଏ ଅଧା-ତୋଳା ଘରର ଗୋଟେ ରୁମ୍‌ରେ ସେ ରହୁଥାଏ । ତା' ଆଗରେ ସିମେଣ୍ଟ-ଗୋଦାମ । ସେଦିନ ରାତିରେ ମୁଁ ମୋ ଦ୍ୱିତୀୟ ସ୍ୱାମୀଙ୍କ ସଙ୍ଗେ ରାତିଟି କଟେଇଲି ।

ସକାଳୁ ସକାଳୁ ସେଇ ପାଖର ସ୍ତ୍ରୀଲୋକମାନେ ମୋତେ ଦେଖିଲେ । ଠେଲାବାଲାର ଘରବାଲୀ, ଗୋଟେ କଉଡ଼ିଦୋକାନୀ, ସମସ୍ତଙ୍କୁ ଶଙ୍କର କହିଲା ସେ ମୋତେ ବାହାହୋଇଛୁ ବୋଲି । ମୋତେ ବଡ଼ ଲାଜ ଲାଗୁଥାଏ । ଦିନେ ଦୁଇଦିନ ଗଳିପଟରେ ମୁଁ ସେଇ ବସ୍ତିବାଲାଙ୍କ ସଙ୍ଗେ ମିଳାମିଶି ଚଳିଲି । ନଚଳିଲେ ଚଳେଇବ କିଏ । ପାଣିପାଇଁ ତ ରାସ୍ତା ପାଖ ନଳକୂଅ ପାଖକୁ ଯିବାକୁ ହେବ । ଝାଡ଼ା ବସିବାପାଇଁ, ଗାଧୋଇବାପାଇଁ ପାଖ ନଦୀଘାଟକୁ ଯିବୁ । ତେଣୁ ନମିଶିଲେ ବାଟନାହିଁ ।

ଗୃହ ପାଞ୍ଚଦିନ ପରେ ଦିନେ ସନ୍ଧ୍ୟାବେଳକୁ ଶଙ୍କର ତା'ର ଗୃହଜଣ ସାଙ୍ଗକୁ ଧରି ପହଞ୍ଚିଲା । ତାଙ୍କ ମଧ୍ୟରୁ ଜଣେ କୁଆଡ଼େ ଇଂଜିନିୟରଙ୍କ ପୁଅ, ଆଉ ଜଣେ ହେଡ଼୍ ମାଷ୍ଟରଙ୍କ ପୁଅ, ଆଉ ଦୁଇଜଣ ବସ୍ତିର ନାମଜାଦା ଟୋକା । ବସ୍ତିର ଭଲମନ୍ଦବେଳେ ସେମାନେ ବାହାରନ୍ତି । ମୋ ବାହାଘରର ଭୋଜିପାଇଁ ସେମାନେ ସମସ୍ତେ ଶଙ୍କର ପାଖେ ଦାବି କରୁଥିଲେ । ମୁଁ ଘର ଭିତରେ ଡରରେ ଠିଆ ହୋଇଥାଏ । ଲଣ୍ଠନ ଆଲୁଅରେ ଯେତିକ ଦେଖିଲି, ସମସ୍ତେ ସମାନ—ବେଶଭୂଷା କଥାବାର୍ତ୍ତାରେ । ଅଳ୍ପସମୟ ପରେ ତାଙ୍କ ଭିତରୁ ଜଣେ ଯାଇ ଗୋଟେ ବିଦେଶୀ ମଦବୋତଲ ଆଣିଲା । ଶଙ୍କର କଥାରେ ମୁଁ ସମସ୍ତଙ୍କୁ ପାଣି ଆଉ ଗିଲାସ ଦେଲି । ସମସ୍ତେ ବସି ମଦ ପିଇଲେ । ସାଙ୍ଗରେ ଆଣିଥିବା ଗୃଟ୍ ଖାଇଲେ । ସମସ୍ତଙ୍କ ମୁହଁରେ ପ୍ରଶଂସା । ଏତେଦିନ ହେଲା ଗାଳି ଖାଇଖାଇ ଟିକିଏ ପ୍ରଶଂସା ଶୁଣିଲା ପରେ ମୁଁ ଖୁସି ହୋଇଥିଲି । ଭାବିଲି ସମସ୍ତେ ଯେପରି ମୋ ନିଜର ଲୋକ । ଯାହାହେଉ ଶଙ୍କରର ସାଙ୍ଗମାନେ ଭଲଘରର ପିଲା, ସେମାନେ ପ୍ରଶଂସା କରିବେନି ତ ଆଉ କ'ଣ ଖରାପ ବ୍ୟବହାର କରିବେ ?

ପ୍ରାୟ ପ୍ରତ୍ୟେକଦିନ ସନ୍ଧ୍ୟାରେ ସେମାନେ ଆସନ୍ତି । ଦେଶୀ-ବିଦେଶୀ ମଦ ପିଅନ୍ତି । ମୁଁ ତାଙ୍କୁ ପାଣିଦିଏ । ଗୃଟ୍ ସଜେଇ ଦିଏ । ଆଳୁ ଭୁଣିଦିଏ । ସେମାନେ ବେଳେବେଳେ ଜିନଷ ଆଣି ଦିଅନ୍ତି, ଗୃଟ୍ କରିଦେବା ପାଇଁ ।

ଆସ୍ତେ ଆସ୍ତେ ସେମାନଙ୍କ ସଙ୍ଗେ ଖାପ୍ ଖୁଆଇ ନେଲି । ପ୍ରଥମେ ପ୍ରଥମେ ସେମାନଙ୍କ ବ୍ୟବହାର ମୋତେ ଭଲ ଲାଗୁନଥିଲା—ଡର ଲାଗୁଥିଲା । ସେମାନଙ୍କ କଥାବାର୍ତ୍ତାରେ ଅବାଗିଆ ଭାଷା—ଭଲ ଲାଗୁନଥିଲା । ଯାହାର ହାତଧରି ବାହାହୋଇଛୁ ଏମାନେ ତ ହେଲେ ତାଙ୍କର ସାଙ୍ଗସାଥୀ । କଟକରେ ମଦର ବା କେଉଁ ଅଭାବ ?

ସବୁ ଗଳିକନ୍ଦିରେ ଦେଶୀ ଦୋକାନ, ବଜାର ଉପରେ ବିଦେଶୀ ଦୋକାନ । ମଦପିଇ ଅହରହ ଲୋକ ମଲେ । ତଥାପି ମଦଦୋକାନ ବଢ଼ି ଗୃଲିଛୁ । ମଦ ନପିଉଥିଲେ ଦୋକାନ ବଢ଼ନ୍ତା କେମିତି ? ଏ କଟକ ସହର ଗୃଲନ୍ତା କେମିତି ।

ଯେଉଁ ସହରରେ ମଦର ଅଂଭିଜାତ୍ୟ ଅଛି, ମୁଁ ବା କାହିଁକି ମୋ ବରକୁ ତା' ସାଙ୍ଗମାନଙ୍କ ସାଙ୍ଗେ ମଦ ପିଇବାକୁ ମନା କରନ୍ତି ।

କେତେଦିନପରେ ଶଙ୍କର କହିଲା, ସେ ପୁରୀ ଯିବ, ରଥଦେଖି । ମୁଁ ବାହାରିଲି, ସେ ମନାକଲା । ଗୋଟେ ବଡ ରହି ସକାଳୁ ଫେରିଆସିବ । ମୁଁ ରାଜିହେଲି । ଶଙ୍କର ଗଲାପରେ ସେଇଦିନ ସନ୍ଧ୍ୟାରେ ତା'ର ସାଙ୍ଗ ତିନିଜଣ ଆସିଥିଲେ । ସବୁଦିନପରି ତାଙ୍କ ସାଙ୍ଗରେ ଥିଲା ମଦବୋତଲ ଗୁଚ୍ଛ । ମୋତେ ପାଣି ମାଗିଲେ, ମୁଁ ପାଣି, ଗ୍ଲାସ୍ ସବୁଦେଲି । ସେମାନେ ମଦ ପିଇଲେ । ମୋ ସାଙ୍ଗେ କଥାବାର୍ତ୍ତା କଲେ । ଅଲ୍ପ ମଦ ପିଇସାରିଲାପରେ ମୋତେ ତାଙ୍କ କୋଳକୁ ଟାଣିନେଲେ ।

ମୁଁ ଏକଥା କେବେହେଲେ ଚିନ୍ତାକରି ନଥିଲି । ସେମାନେ ଶଙ୍କରର ସାଙ୍ଗ—ଭଲ ଘରର ପିଲା । ମଦ ପିଅନ୍ତି, ମାତ୍ର ସାଙ୍ଗର ସ୍ତ୍ରୀ ସାଙ୍ଗେ ଏପରି ବ୍ୟବହାର କରିବେ ସେକଥା ମୁଁ କେବେ ଭାବି ନଥିଲି । ମୁଁ ଯାହା ଭାବିନଥିଲି— ସେଇଆ ହେଲା । ଜଣକ ପରେ ଜଣେ, ତିନିଜଣଯାକ ମୋ ଉପରେ ପାଶବିକ ଅତ୍ୟାଚାର କଲେ । ଗଲାବେଳେ ଶହେ ଟଙ୍କା ଦେଇଗଲେ । ସେମାନେ ଗଲାପରେ ମୁଁ ସେ ଘରେ ପଡ଼ିରହିଲି । ରାତିପାହିଲା—ସକାଳ ହେଲା, ଶଙ୍କର ଫେରିଲା । ମୁଁ ତାକୁ ଏକଥା କହିଲି । ସେ ମୋ କଥାରେ ଗୁରୁତ୍ୱ ଦେଲାପରି ମନେ ହେଉ-ନଥିଲା । ମାତ୍ର ମୋ କଥା ଶୁଣି ବସ୍ତିର ଲୋକ ତାକୁ ଜୋର୍‌କଲେ ଥାନାରେ ରିପୋର୍ଟ ଦେବାପାଇଁ । ଶଙ୍କର ଥାନାରେ ରିପୋର୍ଟ ଦେଲା । ଥାନାବାବୁ ମୋର ବୟାନ ନେଲେ । କେସ୍ ହେଲା । ଧମାଘୋଟ ତଦନ୍ତ ଚାଲିଲା । ମୋ ଫଟୋ ଟି. ଭି.ରେ ଦେଖାହେଲା । ସବୁ ଖବରକାଗଜରେ ମୋ ନାଁ ଛପାହେଲା । ମୋ ଗାଁବାଲା ମୋ ନାଁ ଖବରକାଗଜରୁ ପଢ଼ି ନିଶ୍ଚୟ ଆତ୍ମସନ୍ତୋଷ ଲାଭ କରିଥିବେ ଯେ, ସେମାନେ ପ୍ରକୃତରେ ଗୋଟେ ଦୋଶ୍ଚରୁଣୀକୁ ଗାଁରୁ ତଡ଼ି ଦେଇଥିଲେ ।

ଖବରକାଗଜବାଲାଙ୍କ ସଙ୍ଗେ କେତେ ଭଦ୍ରମହିଳା ମୋତେ ଦେଖାକଲେ । କିଏ କେତେ କଥା ପଚାରିଲେ । ମୋ ନାଁ ସହିତ ତାଙ୍କ ନାଁ ଛପେଇଲେ । ଥାନାବାବୁ ସବୁବେଳେ ମୋ ଉପରେ ଗରଗର । ପୁଲିସ୍ ଅତ୍ୟାଚାରୀଙ୍କୁ ଗିରଫ କରି ପାରିଲେନି । ଖବରକାଗଜବାଲା ଚୁପିଲେ । ପୁଲିସର ମୋ ଉପରେ ରାଗ । ତଦନ୍ତ କାମ ସରିଲା ପରେ ମୁଁ ଶଙ୍କର ପାଖକୁ ଫେରିଲି ମାତ୍ର ଶଙ୍କର ମୋତେ ପାଖରେ ରଖିବାକୁ ରାଜି ହେଲାନି । ମୋତେ ଘରୁ ତଡ଼ିଦେଲା । ପୁଣି ରାସ୍ତାରେ

ବାହାରି, ମୁଁ ଆସିଲି ଓ. ଏମ୍. ପି. ଛକକୁ । କାହା ଆଗରେ ଗୁହାରି କରିବି—ମୁଁ ଜାଣିପାରିଲିନି । ଏବେ ବି ଜାଣିନି । ଯେଉଁମାନେ ମୋ ଫଟୋ ଛପାଇଥିଲେ ସେମାନେ ନଥିଲେ । ଯେଉଁ ମହିଳାମାନେ ମୋ ପାଖରୁ ବୟାନ ନେଇ ସେମାନଙ୍କ ନାଁ ମୋ ନାଆଁ ସାଙ୍ଗେ ଛପେଇଥିଲେ, ଫଟୋ ଉଠାଇଥିଲେ, ସେମାନଙ୍କ ଠିକଣା ମୋ ପାଖେ ନଥିଲା କି ସେମାନେ ମୋତେ ଠିକଣା ଦେଇ ନଥିଲେ । ପୁଲିସବାଲା ତ ମୋତେ ଦେଖିଲେ ଗରଗର, ରାଗ ତମତମ୍, ସତେ ଯେମିତି ମୁଁ ତାଙ୍କର ଶହେ ପଚିଶ ଖାଇଯାଇଛି । କେଉଁ ଭରସାରେ ମୁଁ ବା ତାଙ୍କ ପାଖକୁ ସାହାଯ୍ୟ ପାଇଁ ଯାଇଥାନ୍ତି ।

ସେତେବେଳକୁ ରାତି ପ୍ରାୟ ଏଗାରଟା ହେବ । ଲୋକମାନେ ଛକ ଛାଡ଼ି ଚାଲିଯାଇଥାନ୍ତି । ଅଳ୍ପ ଲୋକ ଏପଟ ସେପଟ ହେଉଥାନ୍ତି । ମୋ ମନରେ ଭୟ ନଥାଏ । କଟକ ମୋ ପାଇଁ ପୁରୁଣା ହୋଇଗଲାଣି । ହଠାତ୍ ରିକ୍ସାବାଲାର ଘଣ୍ଟି ଶୁଣି ମୁଁ ଉଠିପଡ଼ିଲି । ସେ ଭାବିଲା ମୁଁ ତାର ସବାରି । ରିକ୍ସାରେ ବସି କିଛିବାଟ ଗଲାପରେ ମୋତେ ପଚାରିଲା "କୁଆଡ଼େ ଯିବ ।" ମୋ ମୁହଁରେ ଉତ୍ତର ନଥିଲା । ମୋର ଦୟନୀୟ ଅବସ୍ଥା ଦେଖି ସେ ମୋତେ ସେଦିନ ତା ଘରକୁ ନେଇଥିଲା ।

ଘରେ ତା'ର ମା' ଓ ଭଉଣୀ । ସେଇ ୯ ନମ୍ବର ବସ୍ତି…କଟକ ସହରର ବଡ଼ାନାସୀ ଆଡ଼େ । ମୁଁ ତାରି ଘରେ ରହିଲି । ଦିନେ ରହୁ ନରହୁଣୁ ତା ମା'ର ପାଟି—କୁଆଡ଼େ ଗୋଟାକୁ ଧରିଆଣି ଘରେ ରଖିଛୁ । କାମ ନାହିଁ ଦାମ ନାହିଁ, ଏଠି ୟାକୁ କିଏ ଖୁଆଇପିଆଇ ରଖିବ ।

ପରଦିନ ରିକ୍ସାବାଲା ସେଇ ପାଖ କଲୋନୀରେ ମୋତେ ଜଣଙ୍କ ଘରେ ବାସନ ମାଜିବା, ଘରକାମ ପାଇଁ ରଖିଦେଲା ।

ଘରର ବାବୁ ଅଫିସରେ କାମ କରନ୍ତି । ବୟସ ଚାଳିଶ ଉପରେ । ଘରଣୀ ଗାଁରେ । ଗଲା ରବିବାର ଦିନ ମୁଁ ଘରକାମ ସାରି ଫେରିଲାବେଳେ ବାବୁ ତାଙ୍କପାଇଁ ରୋଷେଇ ଦି'ଟା କରିବାକୁ କହିଥିଲେ । ତାଙ୍କ ପାଇଁ ରୋଷେଇ କଲି । ସେ ମୋତେ ଖାଇବାକୁ କହିଲେ, ଖାଇଲି । ତା'ପରେ ମୋର ଯାହା ଅବସ୍ଥା ହେଲା ସେ ବିଷୟରେ ମୁଁ ଥାନାରେ ଏତଲା ଦେଇଛି ।

ଜଜ୍ ସାହେବ—କୁହନ୍ତୁ ମୋର ଦୋଷ କ'ଣ ? ଏ ଦେଶର ଜଣେ ନାଗରିକ ହିସାବରେ ଜନ୍ମନେଇ ମୁଁ କ'ଣ ଭୁଲ କରିଛି ? ମୁଁ ଜାଣେ ଆମ ଗରିବ-ଗୁରୁବାଙ୍କୁ ସହାନୁଭୂତି ଦେଖେଇବା ଆଳରେ ଆମ ମୁଣ୍ଡରେ ନଡ଼ିଆ ଭାଙ୍ଗିବାକୁ ସମସ୍ତେ ଆଗେଇ ଆସନ୍ତି । ସେମାନେ ଆସନ୍ତିନି ଆମର ଦୁଃଖକଷ୍ଟ ବୁଝିବାକୁ,

ସେମାନେ ଆସନ୍ତି ଆମର ଦୁଃଖ ବୁଝି ଛନ୍ତି କହି ବାହାବା ନେବାକୁ । ଖବର-କାଗଜବାଲା ଆମର ଇଜ୍ଜତ ଉପରେ ଲେଖା ଲେଖି ତାଙ୍କ କାଗଜର କାଟତି ବଢ଼ାନ୍ତି । କୁହନ୍ତୁ ଜଜ୍ ସାହେବ, ଏ ଦୁଇଟି ଘଟଣାରେ ସମ୍ପୃକ୍ତ ଥିବା ଦୋଷୀମାନେ କ'ଣ ଦଣ୍ଡ ପାଇବେ ?

ମୁଁ ଜାଣେ, ଆପଣ ଜବାବ୍ ଦେଇ ପାରିବେନି···କାରଣ ଆମ ଦେଶର ଆଇନ୍‌ରେ ଦୋଷ ପ୍ରମାଣ କରିବା ଏତେ ସହଜ ନୁହେଁ । ଜଜ୍ ସାହେବ, ମୋର ଗୋଟିଏ ଶ୍ରେଷ୍ଠ ଅନୁରୋଧ—ଶହେ ଦୋଷୀ ଖସିଯାଆନ୍ତୁ ମାତ୍ର ଜଣେ ନିର୍ଦ୍ଦୋଷ ଦଣ୍ଡ ନପାଉ । ଶହେ ମୋର ପରି ନିରୀହା ଯୁବତୀ ଅତ୍ୟାଚରିତା ହୁଅନ୍ତୁ ପଛେ··· ଆମ ଦେଶର ଆଇନ୍ ଦୋଷୀକୁ ନିର୍ଦ୍ଦୋଷରେ ଖଲାସ ନକରୁ··· ।

# ହ୍ରିଆଭିଲିଟେସନ

କର୍କଟ ସହରର ମୁଖ୍ୟ ବ୍ୟବସାୟ କେନ୍ଦ୍ରର ଗ୍ରୁଡଫାଣ୍ଡି ଗ୍ଟଲଯାଇଥିବା ରାସ୍ତା-ଉପରେ ନାହିଁନଥିବା ଭିଡ଼ । ଭିଡ଼ ସାଙ୍ଗକୁ 'ସ୍ଲୋଗାନ୍'ରେ ଗଗନପବନ ମୁଖରିତ । "ଏସ୍. ପି ସାହେବ—ଜିନ୍ଦାବାଦ୍, ଜିନ୍ଦାବାଦ୍ । ଏସ୍. ପି. ସାହେବ ଯୁଗ୍ ଯୁଗ୍ ଜିଓ, ଯୁଗ୍ ଯୁଗ୍ ଜିଓ ।" କର୍କଟ ସହରର ବାସିନ୍ଦାମାନେ ସ୍ଲୋଗାନ ଶୁଣି ଶୁଣି ଏତେ ଅଭ୍ୟସ୍ତ ହୋଇଗଲେଣି ଯେ ଅଧମାଇଲ୍ ଦୂରରୁ କିଛି ଗୋଟାଏ ଆବାଜ ଆସିଲେ ସେମାନଙ୍କ କାନ ମନକୁ ସୂଚାଇଦିଏ ଯେ ଅମୁକ ପାର୍ଟି କିମ୍ବା ଦଳର ଲୋକମାନେ ରାସ୍ତାକୁ ବାହାରିଛନ୍ତି । ମାତ୍ର ସେଦିନର ସ୍ଲୋଗାନ ଥିଲା—ପୂରା ଅଲଗା । ତେଣୁ ଯେଉଁମାନେ ଦୋକାନ ଭିତରେ ବସିଥିଲେ ସେମାନେ ବାହାର ଆଡ଼କୁ କାନଡେରି ଅନାଇ ବସିଲେ । ଆଉ କେତେକ ବ୍ୟବସାୟୀ ଦୋକାନ ମଧ୍ୟରେ ଥିବା କ୍ରେତା-ମାନଙ୍କ ସହିତ କିଣାବିକା ବନ୍ଦକରି ରାଜରାସ୍ତାକୁ ଲାଗିକି ପଡ଼ିଥିବା ଦୋକାନର ବାରଣ୍ଡା ଉପରେ ଠିଆହୋଇ ଏକଲୟରେ ପ୍ରସେସନ୍ ଆସୁଥିବା ରାସ୍ତାକୁ ନଜର ଦେଲେ । ରାସ୍ତାଘାଟ ବନ୍ଦ । ଗାଡ଼ିମଟର, ରିକ୍ସା, ସାଇକେଲ୍, ଆଗପଛରୁ ଯେ ଆସୁଥିଲେ ରାସ୍ତାକଡ଼ ଧରି ଠିଆ ହୋଇଯାଇଥାନ୍ତି । ଆଗରୁ ଗୋଟାଏ ନଣ୍ଡାଟ୍ରକ୍ ଉପରେ ପ୍ରସେସନ୍ ଆସୁଥାଏ । ପଛରେ ରିକ୍ସାବାଲା, ସାହିପିଲା ପାଟିତୁଣ୍ଡ କରି ଗ୍ଟଲଥାନ୍ତି । ତାଙ୍କ ପଛରେ ପୁଲିସ୍ ବେତାରଗାଡ଼ି । ବୁଢ଼ା ଫଜଲ୍‌ମିଆଁ ତା'ର ପଚିଶବର୍ଷର ଚଷମା ଦୋକାନ ଭିତରୁ ପାଟିକରି କହିଉଠିଲା, "ଆରେ ରହିମ୍ ! ବାତ୍ କ୍ୟା ହାଏ ? ଆଜେ ଏ ଶାଲା ପୋଲିସବାଲାଙ୍କୁ କୋନ୍ ଜିନ୍ଦାବାଦ୍ ଦେତା ହୈ । ଟାଉନ୍ ମେଁ କୁଛ୍ ଗଡ଼ବଡ଼୍ ହୁଆ ?" ରହିମ୍ ତା' ଚେକ୍‌ଲୁଙ୍ଗିଟାକୁ ନାହି ଉପରକୁ ଟେକିଆଣି ମଣ୍ଡାପିଠାପରି ଗଣ୍ଠି ଟେ ପକାଇଦେଇ ଦୋକାନ ବାରଣ୍ଡାରେ ଠିଆ ହୋଇଗଲାଣି । ସ୍ଲୋଗାନ୍‌ଦିଆ ପ୍ରସେସନ୍ ଟ୍ରକ୍‌ଟି ପାଖେଇ ଆସୁଥାଏ । କର୍କଟ ସହରର ପ୍ରସିଦ୍ଧ ମାରୱାଡ଼ି ଲୁଗା ବ୍ୟବସାୟୀ ଭିକାରି ରାମ୍ ଟ୍ରକ୍‌ଆଡ଼କୁ ଗ୍ରୁହିଁଦେଇ ନିଜ ଆଖି ଉପରୁ ମୋଟା କାଚଲଗା ଚଷମାକୁ କାଢ଼ି ପିନ୍ଧାଲୁଗା କାନିରେ ଦୁଇଥର ଘଷିମାଜି ସଫାକରି ଆଖିରେ ଲଗାଇଲେ । ଚଷମାଟା ନାକଦଣ୍ଡି ଉପରେ ବସୁ ନବସୁ ତାଙ୍କ ପାଟିରୁ ବାହାରି ପଡ଼ିଲା, "ରାମ୍, ରାମ୍, ରାମ୍, ଆରେ

ଏ ଦଳଟା ପୁଣି କୁଆଡ଼େ ବାହାରି ପଡ଼ିଲେ ?'' କାଲେ ଟ୍ରକ୍ ଉପରେ ସ୍ଲୋଗାନ୍ ଦେଇ ଯାଉଥିବା ଭଦ୍ରଲୋକମାନଙ୍କ ଶୁଭଆଖି ତାଙ୍କ ଉପରେ ପଡ଼ିଯିବ, ସେଥିଲାଗି ସେ ଦୋକାନ ଭିତରୁ କଇଁଛ ପରି ଲମ୍ବେଇ ଦେଇଥିବା ମୁଣ୍ଡଟାକୁ ପୁଣି ଦୋକାନ ଭିତରକୁ ଟାଣିଆଣିଲେ । ମନେମନେ ଚିନ୍ତାକଲେ, ସହରରେ କିଛି ଗୋଟେ ଘଟିଛି । ଅଳ୍ପସମୟ ପରେ ବୋଧେ ଦୋକାନବଜାର ବନ୍ଦ ହୋଇଯିବ । ନହେଲେ ସହରର ଏ ନାମଜାଦା ଦଳଟାଯାକ ଟ୍ରକ୍‌ରେ ବସି ପୁଣି ଯାଆନ୍ତେ କୁଆଡ଼େ ? ତାଙ୍କର ମନେପଡ଼ିଲା, ସକାଳ ଖବରକାଗଜରେ ତ ସେ ଏ ରାଜ୍ୟରେ ବାତ୍ୟା, ବନ୍ୟା ହବାର ତ ଖବର ଦେଖିନାହାନ୍ତି । ତେବେ କଅଣ ହଠାତ୍ ଭୂମିକମ୍ପ ହେଲା ନା କ'ଣ ? ନହେଲେ ଗାତ ଭିତରୁ ଏ ଗୋଖରଗୁଡ଼ାକ ବାହାରି ସହର ମଝିରେ ସାଲୁବାଲୁ ହୁଅନ୍ତେ କିପରି ?

ଏଇକଥା ଭାବୁ ଭାବୁ ହଠାତ୍ ତାଙ୍କର 'ସ୍ଲୋଗାନ୍'ଟା ମନେପଡ଼ିଲା । ଏମାନେ ତ 'ଏସ୍. ପି. ସାହେବ'ଙ୍କୁ ଜିନ୍ଦାବାଦ୍ ଦଉଛନ୍ତି ! ଏସ୍. ପି.ଙ୍କ ନାମ ମୁଣ୍ଡରେ ପଶିଲା ପରେ ସେ ସାହସବାନ୍ଧି ପୁଣି ଥରେ ଆସ୍ତେ ବେକ ଲମ୍ବେଇ ଦେଖିଲେ ଯେ ଟ୍ରକ୍‌ଟା ମୋଡ଼ ବୁଲିଗଲାଣି । ଆଶ୍ୱସ୍ତିରେ ନିଶ୍ୱାସ ମାଇଲେ, ଭିକାରି ରାମ ଆଣ୍ଡ୍ ସନ୍‌ସର ଖୋଦ ମାଲିକ—ପ୍ରସିଦ୍ଧ ଲୁଗା ବ୍ୟବସାୟୀ ବାବୁ ଭିକାରିରାମ୍ । କେତେଥର ଏଇ ଦଳ ତାଙ୍କ ବେକପାଖରେ ଛୁରୀ ଲହଲହ କରି ଚାନ୍ଦା ନ ନେଇଛନ୍ତି ? ଶହେ ଚାନ୍ଦା ମାଗିଲେ ବ୍ୟବସାୟୀଙ୍କ ପାଟିରୁ ଯଦି ପଚାଶ ବାହାରି ପଡ଼େ, ତେବେ ଶହେ ସ୍ଥାନରେ ଶହେପଚାଶ ଦେବାକୁ ପଡ଼େ । ଚଣ୍ଡୀମା'ଙ୍କ ନିର୍ଦ୍ଦୟାରୁ ରାସ୍ତାରେ ଗଲାବେଳେ ଏମାନଙ୍କ ହାବୁଡ଼େ ଯଦି ପଡ଼ିଲେ, ତେବେ କଥା ସରିଲା । ଗ୍ରୀବ, ଅଣ୍ଟା, ଅଣ୍ଟାତଳେ ଯାହାଥିବ, ସେ ଆଉ ନିଜର ହୋଇ ରହିବନି । ଥାନା, ଫାଣ୍ଡିରେ ରିପୋର୍ଟ ଦବା ତ ଦୂରର କଥା ନିଜ ଘରଣୀକୁ ମଧ୍ୟ ଏକଥା କହିବା ନିରାପଦ ନୁହେଁ । ଯଦି କୌଣସିମତେ କଥାଟା ପ୍ରଘଟ ହେଲା, ତେବେ ଜୋରିମନା ଦଣ୍ଡ ସହିତ ନାକକାନ ମୋଡ଼ିହେବା ଛଡ଼ା ଅନ୍ୟବାଟ ନଥାଏ ।

ସୁଲୁବାବାଙ୍କ ଦଳ । ଯାହାର ସଭ୍ୟମାନେ ଯାଉଣୁଆସୁଣୁ ପୁଲିସର ଚଉଦ-ପୁରୁଷ ଉଦ୍ଧାରୁଥିଲେ, ସେମାନେ ଆଜି ପୁଲିସ ସାହେବଙ୍କୁ 'ଜିନ୍ଦାବାଦ୍' କରୁଛନ୍ତି । ମନେମନେ ହସିଲେ ଭିକାରି ରାମ୍ । ଆୟା ରାମ୍, ଗୟା ରାମ୍ ଯୁଗରେ ବୋଧେ ସବୁ ରାମ୍ ସମାନ ।

ଟ୍ରକ୍ ମୋଡ଼ ବୁଲି ମସଜିଦ୍ ଗଳି ଧରିଲାବେଳକୁ ପାଟି ଆଉ ସ୍ଲୋଗାନ୍ ଶୁଣି ବୁଢ଼ା ଶକୁରୀ ମିଆଁର ବିବି ବାହାର ଦରଜା ଉପରେ ଝୁଲୁଥିବା ଜାଲିପରଦା

ଫାଙ୍କରେ ଟ୍ରକ୍‌କୁ ଗୃହିଁଦେଇ ଖୁବ୍ ବଡ଼ପାଟିରେ ଘର ଭିତରକୁ ଗୃହିଁ ଚଳେଇ-ଉଠିଲେ, "ହାଁ, ମିଆଁ ! ଆରେ ଜଲ୍‌ଦି ଆ । ଦେଖ୍ ତୋ ଓ ଟ୍ରକ୍ ମେଁ ହାମାର୍ ବସ୍ତିକା ମାଗ୍ଲଜ ବୈଠା ହାଏ ! ଗଲେ ମେଁ ଲମ୍ବା ଫୁଲ୍‌କା ହାର, ମାଥେ ମେଁ ସିନ୍ଦୂର କା କଲ—ଆରେ, ମିଆଁ ! ବାତ୍ କୟା ହାଏ ।" ଶୁକୁରୁ ମିଆଁ ଦାଣ୍ଡ-ବାରଣ୍ଡାକୁ ଓହ୍ଲାଇ ପୁଣି ଉପରକୁ ଉଠିଲେ । ବିବିଙ୍କ ଆଡ଼େ ଗୃହିଁ କହିଲେ, "ହାଁ, ଓ ବାତ୍ ତୋ ମୁଝେ ମାଲୁମ୍ ଥା । ଶୁଭେ ଶୁଭେ ତ ମସ୍‌ଜିଦ୍ ମେଁ ଓଇ ବାତ୍ କର ରହେଥେ ।" ତାଙ୍କ କଥା ଶୁଣି ବିବି ପରଦା ଅନ୍ତରାଳରୁ କଥାଟା ଖୋଲିକରି କହିବାକୁ ପାଟି କଲେ । ପାଟିଶୁଣି ଶକୁରୁ ମିଆଁ କହିଲି, "ଆରେ ହାଁ ! ଓ ଯୋ ଏସ୍. ପି. ହାଏ ନାଁ, ଓ ମାଗ୍ଲଜକୁ ହୁୟାବିଲଟେସନ୍ କରେଙ୍ଗେ ।" ଘର ଭିତରୁ ପାଟି ଶୁଭିଲା, "କୟା କରେଙ୍ଗେ ?"

"ହୁୟାବିଲ୍‌ଟେସନ୍—ସମଝେ ନାହିଁ ହୁୟାବିଲଟେସନ୍ ?" ଘର ଭିତରୁ ଶକୁରୁ ମିଆଁଙ୍କ ବିବି ଉତ୍ତର ଦେଲେ, "ହାଁ, ହାଁ—ସମୁଝିଗିଆ ମିଆଁ—ହୁୟା-ବିଲଟେସନ୍ !"

ସେତେବେଳକୁ ପ୍ରସେସନ୍ ଟ୍ରକ୍ ଯାଇ ଦେଉଳସାହି ଛକ ଧରିଲାଣି । ଗ୍ରେଟ ଗ୍ରେଟ ପିଲମାନଙ୍କ ପାଟି ସାଙ୍ଗକୁ ଦଳେ ସାହିକୁକୁର ଭୋ ଭୋ ରଡ଼ିକରି ବୋବାଉଥାନ୍ତି ।

ପାଟିଶୁଣି ସାଇବାଲି ମରଦ, ମାଇପେ ଘରର କାମଦାମ ଛାଡ଼ି ବାହାରି ଆସିଲେ । କୋଡ଼ିଏ ବର୍ଷିୟା ମୋଚି ବାଡ଼ି ପଛପଟେ ପାଣିକୁଣ୍ଡ ପାଖେ ଅଇଁଠା କଂସାକୁ ଫୋପାଡ଼ି ଦେଇ ଦଉଡ଼ିଆସିଲା ବାହାର ବାରଣ୍ଡା ଉପରକୁ । ଟ୍ରକ୍ ଉପରକୁ ଗୃହିଁଦେଲା ମାତ୍ରେ ତା' ପାଟିରୁ ବାହାରି ଆସିଲା, "ଆଲୋ ଏ ବାଡ଼ିପଣା ଅଲପେଇସା ବଲୁଆ ଲୋ, ବୋଉ !" ବଲୁଆ ଓରଫ ବଳିମଙ୍ଗଳ ଜେନାକୁ ସହରରେ ନଚିହ୍ନେ ବା କିଏ ? କୋଡ଼ିଏ ବର୍ଷିୟା ମୋଚି ସଙ୍ଗେ ବଲୁଆର ଚିହ୍ନାପରିଚୟ ଅନ୍ୟ ପ୍ରକାରର । ବର୍ଷକ ତଳେ ନଈଘାଟରୁ ସନ୍ଧ୍ୟା କାର୍ଯ୍ୟକର୍ମ ସାରି ଫେରିଲାବାଟରେ ଏଇ 'ବଲୁ' ତାକୁ ଶୂନ୍ୟେ ଶୂନ୍ୟେ ଟେକି ନେଇଥିଲା ପୁଣି ସେଇ ନଈପଠାକୁ । ତା'ପର ଘଟଣା କେବଳ ସାଇବାଲା ଜାଣିଲେ । ବଲୁ ଖବରଦେଲା—"ସାବଧାନ, ପୁଲିସକୁ ଖବର ଦବ ତ ଘରେ ନିଆଁ ଲଗାଇ ଦେବ ।" ବିଧବା ମା', ଅବିବାହିତ ଝିଅ ମୋଚି ଚୁପ୍‌ରହିଲେ । ସେଇ ବଲୁ ଓରଫ ବଳିମଙ୍ଗଳ ବେକରେ ଫୁଲମାଳ ପକାଇ ଟ୍ରକ୍ ଉପରେ ସ୍ଲୋଗାନ୍ ଛାଡ଼ୁଥାନ୍ତି, "ଏସ୍. ପି. ସାହେବ, ଯୁଗ୍ ଯୁଗ୍ ଜିଓ ।" ମୋଚି ଧଡ଼୍‌କିନା ଦାଣ୍ଡକବାଟଟାକୁ ବନ୍ଦ କରିଦେଇ ଘର ଭିତରକୁ ଫେରିଲା ।

ଟ୍ରକ୍ ଦେଉଳସାହି ଛକ ବୁଲି ଯାତ୍ରାପଡ଼ିଆ ଆଡ଼କୁ ମୁହାଁଇଥାଏ । ଦହିବରା-ବିକାଳି ରାମା ଗଉଡ଼ ଟ୍ରକ୍‌ଆଡ଼କୁ ଚାହିଁ ଅଟକିଗଲା । ତା' ପାଟିରୁ ବାହାରି ଆସୁଥିଲା, 'ଆରେ, ଏ'ତ ଆମ ଗେଡ଼ୁ !'' ଗେଡ଼ୁ ଓରଫ ଗୋବର୍ଦ୍ଧନ ବେହେରା । ଗେଡ଼ୁ ଯେ କେତେଥର ତା' ଦହିବରା ହାଣ୍ଡିରୁ ଦହିବରା, ଆଳୁଦମ୍ ଚାଖି ଚାଖି ସଫା କରିଦେଇଛି, ସେଇ ଏକା ଜାଣେ । କାହାକୁ କହିବ ? କହିଲେ, ଦହିହାଣ୍ଡି ରାସ୍ତା ଉପରେ ଗଡ଼ିବ । ବେକରେ ଧଇଟା ବାଉଁଶିପଳିଆ ଗୋପାଳ ବସିବ । ଶଳା ଯାହା ଖାଇଲେ ଖାଉପଛେ, କିଛି ତ ବଞ୍ଚିବ । ସେ ସବୁବେଳେ ଏଇ ନିୟମ ମାନି ଆଜିପର୍ଯ୍ୟନ୍ତ ବ୍ୟବସାୟ ବଞ୍ଚେଇଛି । କଥାଟା ମନେ ମନେ ଭାବିଲା-ବେଳକୁ ତା' ପାଟିରୁ ହଠାତ୍ ବାହାରିପଡ଼ିଲା, 'ଆରେ, ଏ ବୁଲାଷଣ୍ଢଗୁଡ଼ାକୁ କିଏ ଖାସି କରିଦେଲା ନା କ'ଣ ?'' କଥାରେ କିଛି ରହସ୍ୟ ଅଛି ଭାବି ସେ ଟ୍ରକ୍ ପଛେ ପଛେ ସାଇକେଲ୍‌ହାଣ୍ଡେଲ୍ ଆଗରେ ଦହିବରା ହାଣ୍ଡିଟା ଲଟକେଇ ଯାତ୍ରାପଡ଼ିଆ ଆଡ଼େ ଚାଲିଲା ।

ଯାତ୍ରାପଡ଼ିଆରେ ଅସମ୍ଭବ ଭିଡ଼ । ଚାରିଆଡ଼େ ମଣିଷର ଆଟପଟ୍ଟାଳି । ମଝିରେ ଗୋଟେ ସୁସଜ୍ଜିତ ମଣ୍ଡପ । ପୁଲିସବାଲା ପୋଷାକପିନ୍ଧି ତଦାରଖ କରୁଥାନ୍ତି । ଠିଆ ହୋଇଥିବା ଲୋକମାନଙ୍କୁ ହାତଯୋଡ଼ି ବସାଉଥାନ୍ତି । ସତେ କି ସେଦିନ ପୁଲିସବାଲାଙ୍କର ବାହାଘର ଆଉ ଦେଖଣାହାରିମାନେ ବରଯାତ୍ରୀ ଦଳ । ରାମା ଦେଖିଲା ପେଣ୍ଡାଲ ଉପରେ ମାଇକ୍, ଚେୟାର, ଟେବୁଲ । ମାଇକ୍‌ବାଲା ମାଇକ୍ ଟେଷ୍ଟ କରିବାକୁ ଯାଇ ସବୁବେଳେ ରଡ଼ି ପକାଉଥାଏ—ଏକ, ଦୁଇ, ତିନି, ଚାରି—ଚାରି, ତିନି, ଦୁଇ, ଏକ । ପୁଣି ମାଇକ୍ ମୁହଁରେ ଟିପରେ ଠକ୍-ଠକ୍ । ଏଇ ସମୟରେ ଟ୍ରକ୍ ଯାଇ ପେଣ୍ଡାଲ ପାଖେ ପହଞ୍ଚିଲା । ଟ୍ରକ୍ ଉପରେ ବେକରେ ଫୁଲମାଳା ପକାଇ ସ୍ଲୋଗାନ୍ ଦଉଥିବା ସୁଲୁବାବାଙ୍କ ସଭ୍ୟମାନେ ଗୋଟାକ ପରେ ଗୋଟେ ସିଂହଛୁଆ ପରି ଖପ୍‌ଖାପ୍ ଡିଆଁ ମାରି ଓହ୍ଲାଇପଡ଼ିଲେ । ହଠାତ୍ ସଭାସ୍ଥଳରେ ସମବେତ ଜନତା କରତାଳି ଦେଇ ସମ୍ବର୍ଦ୍ଧନା ଜଣାଇଲେ । ପୁଲିସବାଲାଏ ଖୁବ୍-ଜୋର୍‌ରେ କରତାଳି ଦେଇ ସିଂହଛୁଆମାନଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରୁଥାନ୍ତି । ଏପରିକି ଜଣ ଜଣଙ୍କ ଆଖିରୁ ଆନନ୍ଦାଶ୍ରୁ ଠକ୍ ଠକ୍ ଗଡ଼ିପଡ଼ୁଥାଏ । ସିଂହଛୁଆମାନେ ସବୁ ପେଣ୍ଡାଲ୍ ଉପରେ ଦଶମ ଏସିଆଡ଼ରୁ ସ୍ୱର୍ଣ୍ଣପଦକ ପାଇ ଫେରିଥିବା ଖେଳାଳି-ମାନଙ୍କ ପରି ଛାତିଫୁଲାଇ ଠିଆହେଲେ । କିଏ ପକେଟ୍ ଭିତରୁ ରୁମାଲ ବାହାରିକରି ମୁହଁ ପୋଛୁଥାଏ ତ କିଏ ପ୍ୟାଣ୍ଟ୍ ପକେଟ୍‌ରୁ ପାନିଆ କାଢ଼ି ବାଳ ଠିକ୍ କରି ନେଉଥାଏ । ଏହି ସମୟରେ ସଭାମଞ୍ଚ ଉପରେ ମନ୍ତ୍ରୀଙ୍କ ଆବିର୍ଭାବ ହେଲା । ପରେ ପରେ କାର୍ଯ୍ୟକ୍ରମ ଆରମ୍ଭ ହେଲା । ରାମା ଗଉଡ଼ ସାଇକେଲ ହାଣ୍ଡେଲ୍‌ରେ ଦହିବରା ହାଣ୍ଡି ଶିକା ଉପରେ ଥୋଇ ସେଇଆଡ଼କୁ ଚାହିଁଥାଏ ।

ମନ୍ତ୍ରୀ ମହାଶୟ ଆରମ୍ଭ କଲେ, "ଭାଇମାନେ ! ସାରା ରାଜ୍ୟର ଇତିହାସରେ ଆଜି ଦିନଟି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଲିପିବଦ୍ଧ ହୋଇ ରହିବ; କାରଣ—ବାଘ, ଛେଳି ଆଜି ଗୋଟିଏ ଘାଟରେ ପାଣିପିଇଲେ । ବାଘ ଆଜି ଛେଳିକୁ ଆଲିଙ୍ଗନ କରୁଛି । ଛେଳି ଆଜି ବାଘ ବେକରେ ଚୁମା ଦେଉଛି । ସତ୍ୟଯୁଗ ଆସିବାକୁ ଆଉ ବେଶି ଡେରି ନାହିଁ । ଆପଣମାନଙ୍କ ଆଗରେ ଯେଉଁମାନେ ଠିଆ ହୋଇଛନ୍ତି ଦିନେ ସେମାନେ ଏ ସହରର ଭୟାନକ ଜନ୍ତୁଥିଲେ । ଆପଣମାନେ ଆପଣଙ୍କ ଭାଷାରେ ତାଙ୍କୁ ଅସାମାଜିକ ବ୍ୟକ୍ତି ବୋଲି କହୁଥିଲେ । ବହୁରାତି ଅନିଦ୍ରା ହୋଇ ସହରର ପୁଲିସ ଏମାନଙ୍କୁ ନାସା-ମିମ୍ବାରେ ବୁକ୍‌କରି ମାମୁଁଘରକୁ ପଠାଇଥିଲେ । ଅବଶ୍ୟ, ସେଥିପାଇଁ କେତେ ପୁଲିସଙ୍କ ଦାନ୍ତ ଭାଙ୍ଗିଲା ସେକଥା ପୁଲିସବାଲା ଭଲଭାବେ ଜାଣନ୍ତି । ମାତ୍ର ଆଜି—ଆଜି ସେମାନେ ଆମ ସମାଜ ଭିତରକୁ ଫେରିଆସିଛନ୍ତି । ଆମ ସମସ୍ତଙ୍କ କର୍ତ୍ତବ୍ୟ ସେମାନଙ୍କୁ ରିହାବିଲେଟ୍ କରିବା । ପୁଲିସ ଆଜି ସେମାନଙ୍କ ମନସ୍ତତ୍ତ୍ୱକୁ ବିଶ୍ଳେଷଣ କରି ବିପଥଗାମୀ ପୁତ୍ରଙ୍କୁ ଭଲମଣିଷ କରିବାକୁ ଆପଣମାନଙ୍କ ଆଗରେ ଠିଆ କରିଛି । ଆମ ସମସ୍ତଙ୍କ କର୍ତ୍ତବ୍ୟ—ଏହି ବିପଥଗାମୀ ଯୁବକମାନଙ୍କୁ ମଣିଷ କରିବା, ବାଟକୁ ଟାଣିଆଣିବା ।"
ଘନଘନ କରତାଳିରେ ସଭାସ୍ଥଳ କମ୍ପି ଉଠିଲା ।

ରମା ଗଜୁଡ଼ି ପଛରେ ଥାଇ ତା' ଦହିବରା ହାଣ୍ଡିଟାକୁ ହାତରେ ପାହାରେ ଦେଇ ତା' ସମର୍ଥନ ଜଣାଇଲା । ମନେ ମନେ ଭାବିଲା—ଯାହାହେଉ, ଏଥରକ ଗୋଟେ ବଡ଼ ହାଣ୍ଡିରେ ହାଣ୍ଡିଏ କରି ଦହିବରା, ଆଳୁଦମ୍ ଆଣିବ । ଗେଡ଼ୁ ଆଉ ତାକୁ ବାଟ ଛେକିବ ନାହିଁ । ତା ଲାଭରୁ ପ୍ରତ୍ୟେକଦିନ ଦଶ ବାରଟଙ୍କା ଷଣ୍ଢ ହେବନି । ପିଲାମାନଙ୍କ ପାଇଁ ପ୍ୟାଣ୍ଟ୍‌ସାର୍ଟ କରିହେବ । ଖଣ୍ଡେ ଭଲ ସାଇକେଲ କିଣିପାରିଲେ ବ୍ୟବସାୟ ଅଉ ଟିକିଏ ଅଧିକା ହୋଇପାରିବ ।

ଶେଷକୁ ଗେଡ଼ୁ, ବାଲୁ ଆଉ ସୁଲୁ ପ୍ରଭୃତିଙ୍କୁ ସାମାଜିକ ରିହାବିଲିଟେସନ ପାଇଁ ପନ୍ଦର ହଜାର କରି ଟଙ୍କା ସରକାରଙ୍କ ତରଫରୁ ସାହାଯ୍ୟ ଦିଆଗଲା । ସାହାଯ୍ୟ ନେଇ ସେମାନେ ବ୍ୟବସାୟ କରିବେ । ମଣିଷ ହେବେ । ସହରରେ ଶାନ୍ତି ଫେରିବ । ବ୍ୟବସାୟୀମାନେ ନିର୍ଭୟରେ ବ୍ୟବସାୟ କରିବେ । ଝିଅମାନେ ସ୍କୁଲ, କଲେଜକୁ ନିର୍ଭୟରେ ଯିବେ ।

ସମସ୍ତେ କରତାଳି ଦେଲେ । ସଭା ସାଙ୍ଗ ହେଲା । ତା'ପରଦିନ ଖବରକାଗଜରେ ବଡ଼ ବଡ଼ ଅକ୍ଷରରେ ବାହାରିଲା, "ଅସାମାଜିକ ବ୍ୟକ୍ତି ସମାଜକୁ ଫେରିଲେ । ଅଶାନ୍ତ ସହରରେ ଶାନ୍ତି ଫେରିଲା··· ।"

ତା'ର କିଛିଦିନ ପରେ—

କର୍କଟ ସହର ଦଶହରା ଯାତ୍ରା ପାଇଁ ସରଗରମ । ବ୍ୟବସାୟୀମାନଙ୍କର ମରିବାକୁ ସମୟ ନଥାଏ । ଗରାଖ ଜନାର୍ଦ୍ଦନ ସବୁ ଦୋକାନରେ ଭିଡ଼ ଜମାଇଥାନ୍ତି । ପୂଜା-ବଜାର ବେଶ୍ ଭଲଥାଏ । ରଙ୍ଗବେରଙ୍ଗ ଲାଇଟ୍ ଲାଗି ଦୋକାନବଜାର, ରାସ୍ତାଘାଟ—ବାବାରେ ଆଲୁଅ ହୋଇ ଉଠିଥାଏ । ବାବୁ ଭିକାରି ରାମ ଦୋକାନ ଭିତରେ ବସି ଗରାଖମାନଙ୍କ ଉପରେ ନଜର ରଖିଥାନ୍ତି । ଅନ୍ୟମାନେ କିଣାବିକାରେ ଲାଗିପଡ଼ିଥାନ୍ତି ।

ଦୋକାନ ଭିତରେ ଥିବା ଗଣେଶମୂର୍ତ୍ତି ପାଖରେ ହନ୍ଧ୍ୟା ଧୂପକାଠି ଲଗେଇ ଭିକାରି ରାମ ମୁଣ୍ଡନୁଆଁଇ ମୁହଁ ବୁଲାଇଲା ବେଳକୁ ଦେଖିଲେ ସୁଲୁବାବୁ ତାଙ୍କ ଦୋକାନ ଉପରକୁ ଉଠୁଛନ୍ତି । ସୁଲୁବାବୁଙ୍କୁ ଦେଖି ଦେଖି ଭିକାରି ରାମ ସୁଲୁବାବୁଙ୍କୁ ସ୍ୱାଗତ ଜଣାଇ 'ଆସନ୍ତୁ ଆସନ୍ତୁ, ସୁଲୁବାବୁ ! କେମିତି ଅଛନ୍ତି ?' କହି ଆଗେଇ ଆସିଲେ । ସୁଲୁବାବୁ ଗରାଖମାନଙ୍କୁ ଆଡ଼େଇ ଆଡ଼େଇ ଭିକାରି ରାମଙ୍କ ପାଖେ ପହଞ୍ଚି ତାଙ୍କ କାନପାଖରେ କହିଲେ, 'ଶେଠ୍‌ଜୀ ! ଟିକିଏ ଭିତରକୁ ଆସନ୍ତୁ'—କହି ଦୋକାନର ଅନ୍ଦରମହଲକୁ ପ୍ରବେଶ କଲେ । ଅଗତ୍ୟା କିଛି ନବୁଝି ଶେଠ୍‌ଜୀ ତାଙ୍କ ପଛେ ପଛେ ଗଲେ । ଅନ୍ଦରମହଲର ନିରୋଳା ସ୍ଥାନରେ ସୁଲୁବାବୁ ଶେଠ୍‌ଜୀଙ୍କୁ ପାଞ୍ଚହଜାର ଟଙ୍କା ଦେବାକୁ କହିଲେ । ଭିକାରି ରାମ କିଛି କହିବା ପୂର୍ବରୁ ସୁଲୁବାବୁଙ୍କ ହାତରେ ଗୋଟିଏ ଗ୍ରେଟିଆ ପିସ୍ତଲ ଖେଳିବାକୁ ଲାଗିଲା । କଥାଟାକୁ ଆଉ ଅଧିକ ସମୟ ନଦେଇ ଶେଠ୍‌ଜୀ ପକେଟ୍‌ରୁ ପାଞ୍ଚହଜାର ବାହାର କରି ସୁଲୁବାବୁଙ୍କ ହାତରେ ଧରାଇଦେଲେ । ଦୋକାନରୁ ବାହାରି ଆସିଲାବେଳେ ସୁଲୁବାବୁ ଶେଠ୍‌ଜୀଙ୍କୁ ଟା-ଟା, ବାଏ-ବାଏ କରି ବାହାରିଗଲେ । ଭିକାରି ରାମ ଥରେ ଗଣେଶମୂର୍ତ୍ତି, ଆଉଥରେ ଜନଗହଳି ରାସ୍ତା ଉପରେ ଆଖିବୁଲାଇ ଆଣି ଦୋକାନ ଭିତରେ ବସିପଡ଼ିଲେ ।

ଆଜିକାଲି ବିଲୁ ଆଉ ମୋତିର ବାଟ ଜଗୁନି । ରାତି ବାରଟା ପରେ ସିଧା ମୋତିଘର କବାଟ ପେଲି ଭିତରେ ହାଜର । ପକେଟ୍‌ରେ ମଦ ବୋତଲ, ହାତରେ ଗୁଣ୍ଡ୍ । ତା' ପାଇଁ ଏକା ନୁହଁ, ମୋତି ପାଇଁ ମଧ୍ୟ । ପାଖରେ ଫୁଟିକିଆ ଚକ୍‌ଚକ୍ କରୁଥିବା ଖୁକୁରିଟା ପଡ଼ିଥାଏ । ବେଶ୍ ମୋତିଘର ତା' ଘର ହୋଇଗଲା । ମୋତି କି ତା ବିଧବା ମା'ର ପ୍ରତିବାଦ କରିବାକୁ ଶକ୍ତି ନାହିଁ କି ସାମର୍ଥ୍ୟ ନାହିଁ । ସମସ୍ତେ ଜାଣନ୍ତି, 'ବିଲ୍ୱମଙ୍ଗଳ ଜେନା' ଖରାପ କାମ ଛାଡ଼ି ଭଲ ହେଲେଣି । ନିଶାଗ୍ରସ୍ତ ବିଲୁ ମଧ୍ୟ ମୋତିମା'କୁ ଦିନେ ବୁଝାଇଦେଇ କହିଥିଲା, ''ଦେଖ୍ ମାଉସୀ ! ମୁଁ ଆଉ ବଦମାସି କରୁନି । ମୋତିର ବାଟ ଜଗୁନି । ରାସ୍ତା,

ଘାଟରେ ହୁଲ୍ଲପଟା କରିବା—ଅସାମାଜିକ କାର୍ଯ୍ୟ । ଲୋକଙ୍କ ମାନସମ୍ମାନ ଯାଏ । ବେଶ୍ ଘରକୁ ଆସୁଛୁ, ଘରର ପୁଅ ପରି । ଅନ୍ଧାରରେ ଆସୁଛୁ, ସେଇ ଅନ୍ଧାରରେ ମଧ ପାର୍ ।'' ବିଧବା ମୋଢମା' ଆଖିରେ ଲୂହ ନଥିଲା । ସେ ଖାଲି ଶୁଣୁଥିଲା ଆଉ ଦେଖୁଥିଲା—ତା' ଆଖିଆଗରେ ଘଟିଯାଉଥିବା ଘଟଣାଗୁଡ଼ିକ ।

ଆଉ ରାମା ଗଉଡ଼ ! ତା' ଦହିବରା ବ୍ୟବସାୟ ଚାଲିଛି । ରାସ୍ତାରେ ଆଉ ଗେଡ଼ୁ ଛକିକରି ତା' ହାଣ୍ଡି ଖାଲି କରୁନି; ମାତ୍ର ପ୍ରତ୍ୟେକଦିନ ସନ୍ଧ୍ୟାରେ ଗେଡ଼ୁ ପାଇଁ ଦହିବରା, ଆଳୁଦମ୍ ଯାଏ । ରାମା କେବଳ ଜାଣେ ସେ କେତେ ପଇସା ପାଏ !!



